# ବୈଜୟନ୍ତୀ

ଲେଖକ :—


ଶ୍ରୀ ନାରାୟଣ ମୋହନ ଦେ

ଭଦ୍ରକ



ପ୍ରକାଶକ :—

ଶ୍ରୀ ଅରବନ୍ଦ ମୋହନ ଦେ

ଓ

ଶ୍ରୀ ଅବନୀନ୍ଦ୍ର ମୋହନ ଦେ

ଭଦ୍ରକ

ପ୍ରଥମ ସଂସ୍କରଣ

୧୯୪୦

**Printed by P. Kar,**

UTKAL SAHITYA PRESS,

**CUTTACK**

**1940.**




ମୂଲ୍ୟ—ଠ—୧ ୱ [illegible] ଦଶଅଣା[illegible]ମାତ୍ର

# ମୁଖବନ୍ଧ

ଅଧ୍ୟାପକ ନାରାୟଣମୋହନ ମୋର ସହାଧ୍ୟାୟୀ, ବର୍ତ୍ତମାନ ସହକର୍ମୀ । ତତ୍କୃତ କାବ୍ୟ ବୈଜୟନ୍ତୀର ମୁଖବନ୍ଧ ଲେଖିବା ଭାର ମୋ ଉପରେ ନ୍ୟସ୍ତ ହେଲା । ବୈଜୟନ୍ତୀ ପ୍ରକୃତ ବୈଜୟନ୍ତୀ । ଏହା ସର୍ବଥା ଓ ସର୍ବଦା ଆଦରଣୀୟ ହେବ, ମୋର ପୂର୍ଣ୍ଣ ବିଶ୍ୱାସ । ଏହି ସୁମନାମାଳାର ପ୍ରାୟ ପ୍ରତ୍ୟେକ ସୁମନ ନାରାୟଣମୋହନଙ୍କ ଛାତ୍ରାବସ୍ଥାରେ ସ୍ୱମନରୁ ବିକାଶ ଲଭିଥିଲା । ସ୍ୱବନ୍ଧୁମାନଙ୍କର ସନିର୍ବନ୍ଧ ଅନୁରୋଧରେ ସେ ତାହା ମାଳାକାରରେ ଗୁମ୍ଫିତ କରି ପ୍ରକାଶ କଲେ ।

ନାରାୟଣମୋହନ ଜଣେ ବୈଷ୍ଣବ—ତାଙ୍କର ବୈଷ୍ଣବଭାବ ପ୍ରକୃତ କବିତାବଳୀରେ ଅନ୍ତଃସଲିଳା ଫଲ୍ଗୁବତ୍ ପ୍ରବହମାନ । ବୋଧହୁଏ କବି ବୈଷ୍ଣବ ଭକ୍ତରୂପେ ଫୁଲବନୋଦ୍ୟ ବୃନ୍ଦାବନଚନ୍ଦ୍ର, ବିନୋଦବିହାରୀଙ୍କର ଚିତ୍ତବିନୋଦନ ନିମିତ୍ତ ଏହି ମଧୁରମଧୁମୟୀ ସୁମନମାଳା ଅନୁରାଗୀ ହୃଦୟରେ ରଚନା କରି ତାଙ୍କୁହିଁ ସମର୍ପଣ କରିଅଛନ୍ତି । ବୈଜୟନ୍ତୀର ଅର୍ଥ ମଧ୍ୟ ରତ୍ନମାଳା । ପୁଣି ବୈଷ୍ଣବକବି ନାରାୟଣ ବିଜୟଭକ୍ତିରେ ରାଜରାଜେଶ୍ୱର ଦ୍ୱାରକାଧିପତି ଶ୍ରୀପତିଙ୍କୁ ଏହି ଦିବ୍ୟ ରତ୍ନାବଳୀ ସେବାର ଉପକରଣ-ରୂପେ ତାଙ୍କ ପ୍ରତି ଉତ୍ସର୍ଗ କରିଅଛନ୍ତି । ଅଥବା ଏହି କାବ୍ୟଟି କାବ୍ୟ-ଜଗତରେ ବୈଜୟନ୍ତୀରୂପେ ବିରାଜମାନ ହେବ । ଏହି ଭାବ ହୃଦୟରେ ପୋଷଣ କରି କବି ବୋଧହୁଏ ଏରୂପ ନାମକରଣ କରିଅଛନ୍ତି ।

ଚମତ୍କାର ପ୍ରତିପାଦକ ଶବ୍ଦହିଁ କାବ୍ୟ । ଚମତ୍କାର ପ୍ରତିପାଦନରେ ରସ ପ୍ରଧାନ । ରସ କାବ୍ୟର ଆତ୍ମା । ରସ ସାଧାରଣତଃ ଧ୍ୱନିଦ୍ୱାରା ପ୍ରତିପାଦିତ ହୁଏ । ହୃଦୟରେ ଚମତ୍କାରଭାବ ଜନ୍ମାଏ ସୌନ୍ଦର୍ଯ୍ୟ । ସୌନ୍ଦର୍ଯ୍ୟ ଆନନ୍ଦପ୍ରଦ । କବି ରୂପପାୟୀ । ରୂପ ସୌନ୍ଦର୍ଯ୍ୟର ଆଧାର । ସେ ରୂପ ପ୍ରକୃତିସ୍ଥ ପଦାର୍ଥବିଶେଷର । ଯାହା ସୁନ୍ଦର, ତାହା ବାସ୍ତବ ଓ ସତ୍ୟ । କେବଳ ଇନ୍ଦ୍ରିୟଗ୍ରାହ୍ୟତ୍ୱ ହେତୁ ବିଷୟମାନ ଯେ ବାସ୍ତବ ଓ ସତ୍ୟ, ତାହା ନୁହେ । ଜୀବର ସହଯୋଗୀ ଓ ଉପଯୋଗୀ ବୋଲି ସେସବୁ ବାସ୍ତବ ଓ ସତ୍ୟ । କାରଣ ଏହି ପରିଦୃଶ୍ୟମାନ ଜଗତ୍ ଜୀବ ଓ ଜଡ଼ ସମସ୍ତ ଏକ ଉପାଦାନରେ ଗଠିତ । ଅବସ୍ଥାଭେଦରେ ତାରତମ୍ୟ ପ୍ରଦର୍ଶିତ ହୁଏ ମାତ୍ର । ତହୁଁ ଅବ୍ରହ୍ମସ୍ତମ୍ଭ ପ୍ରତ୍ୟେକ ଜଡ଼ ଓ ଜୀବ ମଧ୍ୟରେ ସମ୍ବନ୍ଧ ନିତ୍ୟ ତଥା ସ୍ୱାଭାବିକ । ଜଡ଼ ତ ଜଡ଼, ତାହାଦ୍ୱାରା କୌଣସି କାର୍ଯ୍ୟ ସାଧିତ ହୋଇ ପାରେ ନାହିଁ । ଅଣୁପରମାଣୁ ପର୍ଯ୍ୟନ୍ତ ପ୍ରକୃତିର ରନ୍ଧ୍ରେ ରନ୍ଧ୍ରେ ଏକ ମହତ୍ ପବିତ୍ର ଉଦ୍ଦେଶ୍ୟ ସହ ଚିତ୍‌ଶକ୍ତି (ପ୍ରାଣନଶକ୍ତି) ବିଦ୍ୟମାନ । ଏହି ଶକ୍ତିଦ୍ୱାରା ଜଗତର ସମସ୍ତ ପଦାର୍ଥ ଏକ ଅତ୍ୟଦ୍ଭୁତ ମହାନିୟନ୍ତ୍ରଣରେ ନିୟନ୍ତ୍ରିତ । ଅବସ୍ଥାଗତ ସମସ୍ତ ଅନୈକ୍ୟ ଓ ବୈସାଦୃଶ୍ୟ ସେହି ଐକ୍ୟରୁ ସମୁଦ୍ଭୂତ—ଐକ୍ୟରେ ପରିଣତ ଓ ପର୍ଯ୍ୟବସିତ । ସେହି ଚିତ୍ ଶକ୍ତି ପୁରୁଷ ବା ଭଗବାନଙ୍କ ଶକ୍ତି । ପୁରୁଷ ଓ ପ୍ରକୃତି ନେଇ ଏହି ଜଗତ୍ । ଜଗତଟି ଭଗବାନଙ୍କ ଲୀଳା । ଲୀଳାରେ ଜଗତରେ ଜନ୍ମ, ସ୍ଥିତି ଓ ଲୟ ଲାଗିରହିଛି । ସେହି ଲୀଳାକାରିଣୀ ଶକ୍ତିର ସତ୍ତ୍ୱ, ରଜ ଓ ତମନାମକ ତିନୋଟି ଗୁଣ ଅଛି । ଭଗବାନଙ୍କ ସେହି ଶକ୍ତି ଜଡ଼ପ୍ରକୃତିରେ ସଞ୍ଚାରିବାରୁ ଉକ୍ତ ତ୍ରିଗୁଣର ସୃଷ୍ଟି । ସେହି ଗୁଣତ୍ରୟଦ୍ୱାରା ଲୀଳା ସଂଘଟିତ । ଭଗବାନ୍ ସତ୍, ଚିତ୍ ଓ ଆନନ୍ଦମୟ ତଥା ସତ୍ୟ, ଶିବ ଓ ସୁନ୍ଦର । ପ୍ରକୃତିରେ

ଭଗବାନଙ୍କ ଶକ୍ତିର ବିଳାସହେତୁ ତତ୍ତ୍ୱମୟୀ ପ୍ରକୃତି ମଧ୍ୟ ସତ୍ୟ, ଶିବ ଓ ସୁନ୍ଦର ତଥା ସତ୍, ଚିତ୍ ଓ ଆନନ୍ଦମୟ ଅବସ୍ଥା ଗ୍ରହଣ କରେ । ଏହି ପ୍ରକୃତି—ଜଗତ୍—ଭଗବତ୍ ଶକ୍ତି ବ୍ୟତିରିକ୍ତ ଏକ ସ୍ୱତନ୍ତ୍ର ବିଷୟରୂପେ ଗୃହୀତ ହେଲେ ମାୟା ଜୀବକୁ ଗ୍ରାସ କରେ । ପ୍ରଥମତଃ ଅପାତରମଣୀୟ ହୋଇ—ପ୍ରେୟରୂପେ ପ୍ରତିଭାସମାନ ହୋଇ ପରେ ଅସାର, ମରୁମୟ ଓ ହାହାକାରପୂର୍ଣ୍ଣ ହୁଏ । ଯେ ଏହି ସଂସାରର ଅନ୍ତଃସ୍ଥଳରେ ସେହି ମହାମାୟ ଶକ୍ତିର ସତ୍ତା ଅନୁଭବ କରନ୍ତି, ସେ ଏହି ସଂସାରକୁ ସୁଖମୟ, ଶାନ୍ତିମୟ ଓ କଲ୍ୟାଣମୟରୂପେ ଦେଖନ୍ତି । ସେ ସଂସାରର ଯାବତୀୟ ତାବତୀୟ ବସ୍ତୁର ଉପଯୋଗିତା ଉପଲବ୍ଧି କରି ସୌନ୍ଦର୍ଯ୍ୟ ଅନୁଭବ କରନ୍ତି ଓ ଆନନ୍ଦ ଉପଭୋଗ କରନ୍ତି । ସେ ପ୍ରକୃତିରେ ଲୀଳାର ମହତ୍ତ୍ୱ ଜାଣନ୍ତି । ଯାହା ଅସୁନ୍ଦରରୂପେ ପ୍ରତିଭାତ ତାହା ଅସଂହତି, ଅଭାବ, ଆବରଣ ବା ପ୍ରତିବନ୍ଧକଜନିତ ସଂଘଟିତ । ତାହା କିନ୍ତୁ ସୌନ୍ଦର୍ଯ୍ୟର ପରିପୋଷକ । ଭୀଷଣତା, କୁରୂପତା ପ୍ରଭୃତି ସେହି ସୌନ୍ଦର୍ଯ୍ୟପ୍ରଦ ଭାବର ଅବସ୍ଥାନ୍ତର ମାତ୍ର ଓ ପ୍ରକାରାନ୍ତରେ ସେମାନେ ସୌନ୍ଦର୍ଯ୍ୟର ମହତ୍ତ୍ୱବିଧାୟକ । ପ୍ରକୃତିର ବହିର୍ଦ୍ଦୃଶ୍ୟାବଳୀରେ—ତମୋଗୁଣର ପୂର୍ଣ୍ଣ ଅଭିବ୍ୟକ୍ତିରେ—ସତ୍ତ୍ୱଗୁଣର, ସତ୍ୟର ମଧୁରତା ଆସ୍ୱାଦିତ ହୁଏ । ସେହି ତ୍ରିଗୁଣମୟୀ ଶକ୍ତି ଅହଙ୍କାରର ମୂଳ, ମାନବଚିତ୍ତର ପ୍ରମାଦ, ପ୍ରଶମ ତଥା ପ୍ରସାଦ-କାରିଣୀ; ତେଣୁ ସେହି ଶକ୍ତି ମଧ୍ୟ ଅମୃତ ବା ମଙ୍ଗଳମୟୀ । ଏହି ଦୃଷ୍ଟିରେ କବି ନାରାୟଣମୋହନ ସ୍ତବକବିତାବଳୀ ଲେଖିଅଛନ୍ତି । ତାଙ୍କର କବିତାମାଳାରେ ବିଶେଷତଃ ମୃତ୍ୟୁଚିନ୍ତାରେ ଉପରିକଥିତ ବିଷୟମାନଙ୍କର ଶେଷାଂଶଟିର ଶୋଭନ ନିଦର୍ଶନ ମିଳେ ।

ପ୍ରାଚୀନ ସଂସ୍କୃତ ଅଳଙ୍କାରିକମାନଙ୍କ ମତରେ ପ୍ରତିଭା, ବହୁଶାସ୍ତ୍ରଦର୍ଶିତା, ଶିକ୍ଷା ଓ ଅଭ୍ୟାସ ଏକତ୍ର ମିଳିତ ହୋଇ କବିତ୍ୱର

ଏକମାତ୍ର କାରଣ ଅଟନ୍ତି । ଯେଉଁ ଶକ୍ତିଦ୍ୱାରା ବିଷୟର ସାର ବା ତତ୍ତ୍ୱ ପରିଦୃଷ୍ଟ ହୁଏ, ତାହା ପ୍ରତିଭା, କିନ୍ତୁ ପ୍ରତିଭା ଏକ ବିଶିଷ୍ଟ ଅର୍ଥରେ ପ୍ରଯୁକ୍ତ ହୁଏ । "ବୁଦ୍ଧିସ୍ତାତ୍କାଳିକୀ ଜ୍ଞେୟା, ପ୍ରଜ୍ଞା ତ୍ରୈକାଲ୍ୟଗୋଚରା । ନବନବୋନ୍ମେଷଶାଳିନୀଂ ପ୍ରଜ୍ଞାଂ ପ୍ରତିଭାଂ ବିଦୁଃ ।" ତଦ୍ଦ୍ୱାରା କବି ନିଜର ବର୍ଣ୍ଣନୀୟ ବିଷୟକୁ କଳ୍ପନାବଳରେ ଅଲୌକିକ ଦିବ୍ୟଭୂଷାରେ ଭୂଷିତ କରି ତାକୁ ଏକ ଅଭିନବ ରୂପ ପ୍ରଦାନପୂର୍ବକ ଜନମନ ହରଣ କରନ୍ତି । କବି ନାରାୟଣମୋହନଙ୍କ କୃତିମାନଙ୍କରେ ବିଶେଷତଃ 'ତାଜମହଲ, ଗଙ୍ଗାରେ ବନ୍ୟା, ମୃତ୍ୟୁ ଶଯ୍ୟା'ରେ ଉଲ୍ଲିଖିତ ବିଷୟମାନଙ୍କର ପ୍ରକୃଷ୍ଟ ନିଦର୍ଶନ ମିଳେ ।

କବିର ହୃଦୟ ସୌନ୍ଦର୍ଯ୍ୟ ଅନୁଭବ କରେ, କାରଣ ତାହା ସୁନ୍ଦର । ପ୍ରକୃତିସ୍ଥ ସୁନ୍ଦର ବିଷୟ ବା ପ୍ରକୃତି ଭାବୁକ କବି ସମକ୍ଷରେ ନିଜର ସୌନ୍ଦର୍ଯ୍ୟ ପ୍ରକାଶ କରେ । ସୁନ୍ଦରର ସହିତ ସୁନ୍ଦରର ସହଯୋଗ ହେତୁ ଉଭୟଙ୍କ ମଧ୍ୟରେ ମଧୁର ଗୋପନ ସମ୍ଭାଷଣ ହୁଏ । ପ୍ରକୃତି ଯେପରି କି କୌତୁକପରବଶ ହୋଇ ତାର ପ୍ରଚ୍ଛନ୍ନ-ସୌନ୍ଦର୍ଯ୍ୟର ପରମ୍ପରା କବିଙ୍କ ମାନସଚକ୍ଷୁ ସମକ୍ଷରେ ପ୍ରକଟିତ କରେ । ସୌନ୍ଦର୍ଯ୍ୟପିପାସୁ କବି ଅନୁରାଗୀ ହୃଦୟରେ ଭିନ୍ନ ଭିନ୍ନ ସୌନ୍ଦର୍ଯ୍ୟ ସନ୍ଦର୍ଶନରେ ମୁଗ୍ଧ ହୁଅନ୍ତି, ଅପୂର୍ବ ଆନନ୍ଦରେ ମତ୍ତ ହୁଅନ୍ତି । ପ୍ରକାରାନ୍ତରରେ ପ୍ରକୃତିର ସୌନ୍ଦର୍ଯ୍ୟ କବିଙ୍କ ହୃଦୟର ବିଷୟୀଭୂତ ହୁଏ । ତାହା ତାଙ୍କ ଚିତ୍ତରେ କଳ୍ପନାବଳରେ ସଂସ୍କୃତ ହୋଇ ନୂତନତ୍ୱ ପ୍ରାପ୍ତ ହୁଏ । ସେହି ନୂତନତ୍ୱ ପ୍ରାପ୍ତିହିଁ ସୌନ୍ଦର୍ଯ୍ୟର ସୃଷ୍ଟି । ତାହାର ଅପର ନାମ କଳା । ସେହି କଳା ପ୍ରକାଶରେ ମଧ୍ୟ କବିଙ୍କ ଚିତ୍ତରେ ପ୍ରସାଦ ଆସେ ନାହିଁ । ସେ ଭାବନ୍ତି, କିଛି ଅଭାବ ରହିଗଲା । କାରଣ ସୌନ୍ଦର୍ଯ୍ୟ ଅନନ୍ତ । ତାର ସତ୍ତା ଓ ଉପଲବ୍ଧି

ସମ୍ପୂର୍ଣ୍ଣରୂପେ ପରିକଳ୍ପିତ, ଗୃହୀତ ତଥା ପ୍ରକାଶିତ ହୋଇ ପାରେ ନାହିଁ । କବି ନିଜର ଦିବ୍ୟତୂଳିକାରେ ମଧୁର କଳ୍ପନାବଳିରେ ତାହା ଚିତ୍ରଣ କରିବାରେ ଯଥାସାଧ୍ୟ ଚେଷ୍ଟା କରନ୍ତି, କିନ୍ତୁ ସଫଳ-କାମ ହୋଇ ପାରନ୍ତି ନାହିଁ । ଅନନ୍ତକୁ ସାନ୍ତ ନିଗଡ଼ରେ ନିଗଡ଼ିତ କରିବା ବୃଥା ପ୍ରୟାସ ମାତ୍ର । କବି ନାରାୟଣ ଏହା ଅନୁଭବ କରି ସ୍ୱକୃତ 'ତାଜମହଲ' କବିତାରେ ସୁସ୍ପଷ୍ଟ ପ୍ରକାଶ କରିଅଛନ୍ତି ।

ଦଣ୍ଡୀଗୁର୍ଜ୍ଜି କାବ୍ୟର ସ୍ୱରୂପ ନିର୍ଣ୍ଣୟପ୍ରସଙ୍ଗରେ କହିଅଛନ୍ତି, "ଇଷ୍ଟାର୍ଥବ୍ୟବଚ୍ଛିନ୍ନା ପଦାବଳୀ" ଯେଉଁ ପଦାବଳୀଦ୍ୱାରା ଅଭିପ୍ରେତ ଅର୍ଥ ପ୍ରକାଶିତ ହୋଇ ଲୋକଙ୍କ ମନରେ ଚମତ୍କାରଭାବ ପ୍ରତିପାଦିତ ହୁଏ, ତାହା କାବ୍ୟ । ଯେ ଏପରି କାବ୍ୟ ଲେଖନ୍ତି, ସେ ପ୍ରକୃତ କବି । ସେଥିନିମିତ୍ତ ନାନା ଅଳଙ୍କାରାଦିର ସୃଷ୍ଟି । ଶଂସିତ କବିଙ୍କ ଖଣ୍ଡକାବ୍ୟ-ମାନଙ୍କରେ କ୍ଲିଷ୍ଟକଳ୍ପନା ନାହିଁ, ଅପ୍ରାକୃତକତା ଦୋଷ ନାହିଁ । ଅଧିରସର ଅଯଥା ବିଶ୍ଳେଷଣଜନିତ ଅଶ୍ଳୀଳତା ଦୋଷର ଗନ୍ଧ ନାହିଁ । ତାଙ୍କ କବିତାବଳୀର ଭାଷା ଲଳିତ କୋମଳ ତଥା ସରଳ ଓ ପ୍ରାଞ୍ଜଳ । କବି ନାରାୟଣ ଅନାସ୍ଥା ପ୍ରଦର୍ଶନ ପୂର୍ବକ ଅତୀତକୁ ଧରିହାର ନ କରି ନୂତନ ଭାବନାର ମୂର୍ଚ୍ଛନାରେ ତାକୁ ନୂତନ ଓ ଜୀବନ୍ତ ରୂପରେ ଉପସ୍ଥାପିତ କରି ପାରିଅଛନ୍ତି ।

ପୂର୍ବ ପୂର୍ବ କବିମାନଙ୍କର ଭାଷା ଓ ଭାବ ଗ୍ରହଣରେ କବିଙ୍କ ମୌଳିକତାରେ ବାଧା ପଡ଼େ ନାହିଁ । କାରଣ ଯାହା ତଥ୍ୟ, ତାହା ସମସ୍ତଙ୍କର, ତାହା ନିତ୍ୟ ନୂତନ । ତାହାର ଗ୍ରହଣ କବିଙ୍କ ମହତ୍ତ୍ୱର ପରିଚାୟକ ।

ପ୍ରତ୍ୟେକ ଜାତିର ସାହିତ୍ୟରେ ବିଶେଷତ୍ୱ ଅଛି । ତାହାର 'ଛନ୍ଦରେ' ତାର ବିଶେଷତ୍ୱ ଲକ୍ଷିତ । କବି ନାରାୟଣ ପ୍ରାଚୀନ

ଛନ୍ଦମାନଙ୍କୁ ଗ୍ରହଣ କରି ଓ ସ୍ଥାନେ ସ୍ଥାନେ ନୂତନ ଛନ୍ଦକୁ ଆଶ୍ରୟ କରି ପ୍ରକୃତ ଉତ୍କଳ ଜାତୀୟ ସାହିତ୍ୟରସିକତାର ପରିଚୟ ପ୍ରଦାନ କରିଅଛନ୍ତି ।

ବର୍ତ୍ତମାନ କବି ନାରାୟଣମୋହନଙ୍କ କାବ୍ୟମାଳା ବିଚାର୍ଯ୍ୟ:— “ଶ୍ୟାମାଗମେ” ରେ ପ୍ରକୃତିରେ ଭଗବତ୍‌ଶକ୍ତିର ବିକାଶଛଳରେ ଶାରଦୀୟ ‘ଶ୍ୟାମା’ ସୁଷମାର ସଲୀଳ ବିଳାସ ଏହି ଅସାର ସଂସାରକୁ ସସାର ସରସରୂପେ ପ୍ରତିପାଦିତ କରିଅଛି । “ତାଜମହଲରେ” ପ୍ରେମରସ ଆସ୍ୱାଦିନୀ ଯମୁନା ବର୍ଣ୍ଣନରେ କବି ପ୍ରେମର ଉତ୍କର୍ଷ ତଥା ମାଧୁର୍ଯ୍ୟ ଦର୍ଶାଇଅଛନ୍ତି । ମୋଗଲ ସମ୍ରାଟଙ୍କ ହୃଦୟର ସରସ କୋମଳତା ତଥା ପ୍ରେମପ୍ରବଣତା ଦର୍ଶାଇ କବି ପାର୍ଥିବପ୍ରେମରେ ଦିବ୍ୟତ୍ୱର ବିକୃତି ବା ବିପରିଣତି ପ୍ରଖ୍ୟାପନ କରିଅଛନ୍ତି । ସେ ଉନ୍ନତ ପ୍ରେମର ମର୍ମ ଜନସାଧାରଣରେ ପ୍ରଦର୍ଶିତ ହୋଇ ନାହିଁ, ଏଥିନିମିତ୍ତ ଦୁଃଖପ୍ରକାଶ ପୂର୍ବକ ନିଜର କଳ୍ପନାତୂଳିକାରେ ତାର ଶୋଭନ ପ୍ରେମମୟ ଚିତ୍ର ଅଙ୍କନ କରିଅଛନ୍ତି । ସୌନ୍ଦର୍ଯ୍ୟରେ ଆନନ୍ଦ ଓ ଆନନ୍ଦରେ ପ୍ରେମ ତାହା ପ୍ରତିପାଦିତ କରିଅଛନ୍ତି । ତାଜମହଲ ସୁନ୍ଦର-କଳାବିଦ୍ୟାର ପରାକାଷ୍ଠା । କଳାର ଆତ୍ମା ସୌନ୍ଦର୍ଯ୍ୟ । ତହିଁ ସମୂହ କଳାର ସଂଗୀତ, କବିତା, ଚିତ୍ରକଳା, ଶିଳ୍ପକଳାଦିର ସମାବେଶରେ ଏହି ଅପୂର୍ବ ଦିବ୍ୟ ରମଣୀୟ ପ୍ରେମମନ୍ଦିର ତାଜମହଲ ନିର୍ମିତ । ସୌନ୍ଦର୍ଯ୍ୟମୟୀ ପ୍ରୀତିର ଅପୂର୍ବ ବିଳାସରେ ଆତ୍ମହରା ହୋଇ ସମ୍ରାଟ ସାହାଜାହାନ କବିରୂପରେ ତାଙ୍କ-ପ୍ରୀତିକୁ ସୀମାର ନିଗଡ଼ରେ ନିଗଡ଼ିତ କରି କ୍ଷୋଭ ପ୍ରକାଶ କରିଅଛନ୍ତି । କବି ନାରାୟଣ ସମ୍ରାଟଙ୍କ ମୁଖରେ ନିଜର କାର୍ଯ୍ୟକୁ ଧୃଷ୍ଟତାର ନିଦର୍ଶନ ରୂପ ସୂଚିତ କରି ନିଜର ସାନ୍ତତା, ଅଳ୍ପଶକ୍ତିମତ୍ତାର ପରିଚୟ ପ୍ରଦାନ କରିଅଛନ୍ତି ।

'ପରିଣତିରେ ଅଦ୍ଭୁତ ବୀଜ ଦୁର୍ଭେଦ୍ୟ ପ୍ରସ୍ତର ଭେଦ କରି ପଲ୍ଲବିତ, ପୁଷ୍ପିତ ଓ ଫଳବନ୍ତ ହୋଇ ମହା ଉପକାର ସାଧନ କରିଅଛି; ଏହି ଦୃଷ୍ଟାନ୍ତ ସ୍ଥଳରେ ଜୀବ ନିଜର ଦୃଢ଼ ଐକାନ୍ତିକ, ମାନସିକ ଶକ୍ତିବଳରେ ଅଦ୍ଭୁତ ସାଧନ କରେ ତଥା ମଧୁମୟ ଫଳ ଲଭ କରେ, ସାଧନାରେ—ତପସ୍ୟାରେ ସିଦ୍ଧିଲଭ ହୁଏ, କବି ଏହି ମହା ଉପଦେଶ ପ୍ରଦାନ କରିଅଛନ୍ତି ।

ଉତ୍କଳର ଶିଳ୍ପୀର ଉତ୍କଳଶିଳ୍ପୀ ପ୍ରକୃତିକୁ ଦମନ ନ କରି ତାହା ସହିତ ସହଯୋଗିତାରେ ଏକ ଅଦ୍ଭୁତ ମଧୁର କଳାବିଭବ ସୃଷ୍ଟି କରି ପାରିଅଛି, ଯହିଁରେ ଏକ ଦିବ୍ୟ ପ୍ରୀତି ଆଳାପର ରାଗିଣୀ ଜଗତକୁ ଆକୃଷ୍ଟ, ମୁଗ୍ଧ ଓ ଆହ୍ଲାଦିତ କରି ପାରିଅଛି । ଏହା ଦର୍ଶାଇ କବି ନିଜର ଅନାବିଳ ଦେଶପ୍ରାଣତାର ସୂଚନା ଦେଇଅଛନ୍ତି । ଚିନ୍ମୟୀ, ବାଙ୍ମୟୀ ଓ ପ୍ରେମମୟୀ କବିତାବଳୀରେ ଯଥାକ୍ରମେ ଦେବୀ ଭଗବତୀ ଅଘଟନଘଟନପଟୀୟସୀ ଶକ୍ତିରୂପିଣୀ ପ୍ରକୃତି ବା ସରସ୍ୱତୀଙ୍କ ବିଭିନ୍ନ ବିଳାସମୂର୍ତ୍ତି ସୂଚିତ ହୋଇ ଚିଦାନନ୍ଦର ପ୍ରେମାତ୍ମକ ମୂର୍ଚ୍ଛନାମୟ ମଧୁରବିଭବର ଝଙ୍କାରରେ ଜଗତର ହୃଦୟ ବିଧୂନିତ ହେଉଅଛି । ଅରୂପ ରତନରେ କ୍ଷଣିକ ସୁଖଦ କାମ ବର୍ଜନପୂର୍ବକ ଚିରନ୍ତନ ସୁଖ ଶର୍ମଦ ପ୍ରେମର ମାହାତ୍ମ୍ୟ ପ୍ରକଟନଚ୍ଛଳରେ ସୀତା ସୁନ୍ଦରୀଙ୍କ ପାତିବ୍ରତ୍ୟର ପବିତ୍ର ଗୁରବ୍ୟ ପ୍ରଦର୍ଶିତ ।

ମହାନ୍ ଭାରତୀୟ ଜୀବନର କର୍ଣ୍ଣଧାର, ଗୁରୁ ମହାପୁରୁଷ ବାଲ-ଗଙ୍ଗାଧରଙ୍କ ଜାତୀୟ ଜୀବନର ଉତ୍କର୍ଷସାଧନରେ ଐକାନ୍ତିକ ନିଷ୍ଠା ଅତୁଳନୀୟ । ସେ ଆଦର୍ଶ ପୁରୁଷରୂପେ ଜନ ସମକ୍ଷରେ ଉପସ୍ଥାପିତ । ମଧୁସୂଦନ ଉତ୍କଳର ମୋହନିବାରକ, ଉନ୍ନତିପଥର ପ୍ରଦର୍ଶକ,

ଜାତିର ପ୍ରବୋଧ, ଗୁରୁରୂପେ ଯଥାଯଥ ବର୍ଣ୍ଣିତ । ସେହି ମହାପୁରୁଷଙ୍କ ପଦାଙ୍କ ଅନୁସରଣ କରିବାକୁ ଉତ୍କଳବାସୀଙ୍କୁ ସନିର୍ବନ୍ଧ ଅନୁରୋଧ କରି ବୀରପୂଜାର, ମହତ୍ତ୍ୱପୂଜାର ଉପଯୁକ୍ତ ଶିକ୍ଷା ପ୍ରଦାନ କରି ଅଛନ୍ତି । ଗଙ୍ଗାର ବନ୍ୟାଦର୍ଶନରେ କବି ଗଙ୍ଗାଙ୍କର—ମାତାଙ୍କର—ମଙ୍ଗଳମୟୀଙ୍କର—ନିର୍ଗୁଣମୟୀଙ୍କର ଭୀଷଣତା ବର୍ଣ୍ଣନପ୍ରସଙ୍ଗରେ ମାନବର ଦୌରାତ୍ମ୍ୟ ପ୍ରଶମନ ଅନନ୍ତର ଜୀବନର ଗତିମୁକ୍ତି ଦାୟିନୀରୂପେ କଥିତ ହୋଇଅଛନ୍ତି । "ମୃତ୍ୟୁଚିନ୍ତାରେ" ମାନବ ଜୀବନର ଗତି ସୁନ୍ଦରରୂପେ ଚର୍ଚ୍ଚିତ ଓ ମଧୁର କାରୁଣ୍ୟମୟ ମୂର୍ଚ୍ଛନାରେ ଏକ ଅପୂର୍ବ ଗୀତି ବିଳସିତ । ମୃତ୍ୟୁରେ—ଭୀଷଣତାରେ ମାଧୁର୍ଯ୍ୟ, ସୌନ୍ଦର୍ଯ୍ୟର ଉପଲବ୍ଧି । ପ୍ରେୟ ପରିହାର ପୁରଃସର ଶ୍ରେୟରେ ମାନବଜୀବନର ପରମ ଶାନ୍ତି ସୁନ୍ଦରଭାବରେ ଚମତ୍କାରିତାର ସହିତ ବର୍ଣ୍ଣିତ ।

ଭରତ ପକ୍ଷୀ ବିଷୟରେ ଦ୍ୱଓର୍ଥି ଓ ପ୍ରେମଦେବ ବିଷୟରେ ଗୋଟିଏ କବିତା ପଦ୍ୟାକାରରେ ଅନୂଦିତ । କବି ମୂଳର ଭାବ ସୁନ୍ଦରଭାବରେ ସଂରକ୍ଷଣ କରି ନିଜର କବିତ୍ୱର ଅପର କବିର ମାନସିକ ଭାବ ବିଶ୍ଳେଷଣକାରୀ ଶକ୍ତିର ସୁନ୍ଦର ପରିଚୟ ପ୍ରଦାନ କରି ଅଛନ୍ତି ।

ବୀଣାପାଣି କବିତାରେ ବିଶ୍ୱର ମଧୁର ଜୀବନ ପ୍ରଦାୟିନୀ ଜୀବନସ୍ୱରୂପିଣୀ ଅପୂର୍ବ ଲୀଳାକାରିଣୀ ଅଘଟନଘଟନକାରିଣୀ ରୂପରେ ବର୍ଣ୍ଣିତ—ସେ ମଧ୍ୟ ଚିନ୍ମୟୀ, ବାଙ୍ମୟୀ ଓ ପ୍ରେମମୟୀ ରୂପେ ଏକାଧାରରେ ପ୍ରଦର୍ଶିତ । ପୂର୍ବ କବିତାନିଚୟର ଏ କବିତା ସମଷ୍ଟି-କରଣ କହିଲେ ଅତ୍ୟୁକ୍ତି ହେବ ନାହିଁ । 'ଅଶୋକବନେ ସୀତା

ଓ ସରମା' କବିତାରେ ନମ୍ରତା ଓ ମହତ୍ତ୍ୱର ଚିତ୍ର ସୁନ୍ଦରରୂପେ ଅଙ୍କିତ ହୋଇ ଧୀରତା ଓ ପାତିବ୍ରତ୍ୟର ମୂର୍ଚ୍ଛନା ତହିଁରେ ଉଷାଣିତ । "ବଡ଼ଦେଉଳରୁ ପ୍ରସ୍ତର ସ୍ଖଳନ" କବିତା କବିଙ୍କର ଉତ୍କଳୀୟ ପ୍ରାଣର ଦେଶପ୍ରାଣତା ଅତି ଜୀବନ୍ତଭାବରେ ପରିସ୍ଫୁଟ । ଏହା ପ୍ରତ୍ୟେକ ହୃଦୟବାନ୍ ଉତ୍କଳୀ ପ୍ରାଣକୁ ମଧୁର କରୁଣ ଆଲୋଡ଼ନରେ ଆଲୋଡ଼ିତ କରିବ, ଏହା ନିଃସନ୍ଦେହ । ମୋଟରେ ନାରାୟଣମୋହନଙ୍କ ମୌଳିକତା, ସୁନ୍ଦର ଭାବସଂଯୋଜନରେ ପ୍ରତିଭା, ସୁନ୍ଦର କଳ୍ପନା ବିଳାସରେ ମାନବଜୀବନର ସତ୍ୟ ଆଦର୍ଶ-ଭୂତ ବିଷୟ ମହାମାନବଦ୍ୱୟଙ୍କ ଚିତ୍ରଣରେ ସୁନ୍ଦରରୂପରେ ପ୍ରତିପାଦିତ ।

ଉତ୍କୃଷ୍ଟ କବିତାବଳୀରେ ରାଧାନାଥଙ୍କ ମଧୁର ସରସତା ଓ ମଧୁସୂଦନଙ୍କ ଗମ୍ଭୀର ଔଦାର୍ଯ୍ୟ ଏକାଧାରରେ ସନ୍ନିବେଶିତ ।

ଅବଶ୍ୟ ସ୍ଥାନେ ସ୍ଥାନେ କବିତାବଳୀରେ ନୀରସ ଗଦ୍ୟାତ୍ମକ ପଙ୍‌କ୍ତି ପରିଦୃଷ୍ଟ ହୁଏ, କିନ୍ତୁ ତାହା ସରସ ମଧୁର ପଦାବଳୀ ମଧ୍ୟରେ ନିହିତ ହେତୁ ତାହା ଉପେକ୍ଷଣୀୟ ।

ଏ ସୁନ୍ଦର ସୁମନାବଳୀ ଉତ୍କଳର ସାହିତ୍ୟିକମାନଙ୍କର ତଥା କାବ୍ୟବିନୋଦୀ ଜନଗଣଙ୍କର ଆଦରର ବିଷୟ ହେବ, ଏହା ମୋର ପୂର୍ଣ୍ଣ ବିଶ୍ୱାସ ।

**ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି**
ସଂସ୍କୃତ ସାହିତ୍ୟାଧ୍ୟାପକ
କଟକ କଲେଜ

# ବିଜ୍ଞପ୍ତି

ଏହି ପୁସ୍ତିକାରେ ପ୍ରକାଶିତ ପଦ୍ୟଗୁଡ଼ିକ ମଧ୍ୟରୁ କେତେକ ସମସାମୟିକ ପତ୍ରିକାମାନଙ୍କରେ ପ୍ରାୟ ୩୦ ବର୍ଷ ତଳେ ସ୍ଥାନ ପାଇଥିଲା । ଲବ୍ଧପ୍ରତିଷ୍ଠ ସାହିତ୍ୟସେବୀ ରାୟସାହେବ ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି ଏମ୍. ଏ. ପାଣ୍ଡୁଲିପିଟି ପାଠ କରି ବହୁ ଶ୍ରମ ସ୍ୱୀକାରପୂର୍ବକ ଯେଉଁ ଯେଉଁ ପରିବର୍ତ୍ତନର ସଙ୍କେତ କରିଥିଲେ, ସମୀଚୀନତା ଦୃଷ୍ଟିରେ ସେଗୁଡ଼ିକରୁ ଅଧିକାଂଶ ମୁଁ ଗ୍ରହଣ କରିବାକୁ ବାଧ୍ୟ ହୋଇଅଛି । ଇଂରାଜୀ ଏମ୍.ଏ, ଶ୍ରେଣୀର ଛାତ୍ର ଶ୍ରୀ ଗଜେନ୍ଦ୍ରନାଥ ପଣ୍ଡା ବି. ଏ. ପାଣ୍ଡୁଲିପିଟିକୁ ପ୍ରକାଶଯୋଗ୍ୟ କରିବାରେ ସହାୟତା କରି ନିଜର ସାହିତ୍ୟରସିକତାର ବିଶେଷ ପରିଚୟ ପ୍ରଦାନ କରିଅଛନ୍ତି ।

ଟିକିଏ ଅନୁଧ୍ୟାନ କଲେ ଜଣାପଡ଼େ, ଯେପରି କି ସତେ ଆଧୁନିକ ଯୁଗର ସମସ୍ୟାଗୁଡ଼ିକ 'ହିତବାଦ' ତଥା 'ହେତୁବାଦୀର' ଚାରିଆଡ଼େ ବେଙ୍ଗଳା ପକାଉଛନ୍ତି ମାନ; ତେଣୁ ସୁକୁମାର କଳା-କୃଷ୍ଟି ପ୍ରତି ଅହେତୁକୀ ପ୍ରୀତି ଆଦର୍ଶବାଦ ଓ ରହସ୍ୟବାଦର ଗଣ୍ଡୀ ମଧ୍ୟରେହିଁ ଅପାଙ୍କ୍ତେୟ ହୋଇ ପଡ଼ି ରହିଅଛି । ବାସ୍ତବ ଜୀବନର କର୍କଶତା ସଙ୍ଗରେ ତାର ସଂଘର୍ଷ ଅତି ଅଳ୍ପ । ଅନଶନ, ଦୈନ୍ୟ ଓ ଦାରିଦ୍ର୍ୟରେ ନିଷ୍ପେଷିତ ଓ ନିର୍ଯ୍ୟାତିତ ମାନବହୃଦୟରେ ରଞ୍ଜିନୀ ବୃତ୍ତିଗୁଡ଼ିକର ସ୍ୱତଃ ସ୍ଫୂର୍ତ୍ତି ଅସମ୍ଭବ ହେବାରୁ ଏହି ଭୂତାବିଷ୍ଟ ସଭ୍ୟତାର ପରିସ୍ଥିତି ମଧ୍ୟରେ ଲଳିତକଳାର ଅନୁଶୀଳନ ନାନାଆଡ଼ୁ ବାଧା ପ୍ରାପ୍ତ ହୋଇଅଛି । ଏହି ଯୁଗୋଚିତ ପ୍ରଚାଢ଼ ଭୂତାଭିନିବେଶରୁ ରଞ୍ଜିନୀବୃତ୍ତିଗୁଡ଼ିକୁ ସମ୍ପୂର୍ଣ୍ଣ ମୁକ୍ତ କରି ମାନବ ହୃଦୟରେ

କାବ୍ୟାମୃତରସାସ୍ୱାଦର ସ୍ପୃହା ଉଦ୍ରେକ କରି ପାରିବା ମହାଁଯୁସୀ ପ୍ରତିଭାର କାର୍ଯ୍ୟ ।

ଏବଂବିଧ ନାନାକାରଣରୁ ଏହି ବହୁ-ପୂର୍ବ-ପ୍ରକାଶିତ ପଦ୍ୟଗୁଡ଼ିକୁ ଏକତ୍ର କରି ପୁସ୍ତକାକାରରେ ଜନସାଧାରଣରେ ଉପସ୍ଥାପିତ କରିବାକୁ ମୁଁ ବିଶେଷ କୌଣସି ଆଗ୍ରହ କରି ନ ଥିଲି । କତିପୟ ଅନ୍ତରଙ୍ଗ ବନ୍ଧୁ ଅକୃତ୍ରିମ ସ୍ନେହପରବଶ ହୋଇ ମୋର ଔଦାସୀନ୍ୟ ଭଙ୍ଗରେ ବାରମ୍ବାର ଚେଷ୍ଟା କରିଥିଲେହେଁ, ସଫଳକାମ ହୋଇ ନ ଥିଲେ । ଆଜି କିନ୍ତୁ କେତେକ ଅନୁରାଗପ୍ରବଣ ସୁକୁମାରମତି ଯୁବବନ୍ଧୁଙ୍କର ଉତ୍ସାହପୂରିତ ଉପରୋଧ ଆଉ ଏଡ଼ି ହେଲା ନାହିଁ । ସେମାନଙ୍କର ତରୁଣ ଜୀବନର ଦୁଃସାହସିକତା ମୋର ଜୀର୍ଣ୍ଣ ହୃଦୟରେ ସଂକ୍ରାମିତ ହୋଇ ପଡ଼ିବାରୁ ମୁଁ ମୋର ନିଜର କ୍ଷୁଦ୍ରତାକୁ ସମ୍ପୂର୍ଣ୍ଣ ଭୁଲି ନ ଥିଲେହେଁ ନିଖିଳ ବିଶ୍ୱବନ୍ଦନୀୟ ମହା ମହା କବିମାନଙ୍କର ପାରିଜାତମାଳାରେ ପରିଶୋଭିତ ଶ୍ରୀ ମହାକାଳଙ୍କର ବିଶାଳ ବକ୍ଷରେ ମୋର ଏହି କ୍ଷୁଦ୍ର ବୈଜୟନ୍ତୀଟି ଲମ୍ବାଇବାକୁ ଦୁଃସାହସ କଲି । ଆଶା—"କୁସୁମ ପରଶେ ପଟ ନିସ୍ତରେ ।" ଇତି ।

ଶ୍ରୀ କୃଷ୍ଣାର୍ପଣ ମସ୍ତୁ

ମହାବିଷୁବ ସଂକ୍ରାନ୍ତି
୧୩ । ୪ । । ୪୦

ଶ୍ରୀ ନାରାୟଣମୋହନ ଦେ
ଭଦ୍ରକ

# ସୂଚୀ

---

# ଶୁଦ୍ଧିପତ୍ର

| ପୃଷ୍ଠା | ପଂକ୍ତି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୯ | ୧୧ | କୃତ | — ପ୍ରକୃତ |
| ୨୧ | ୧୬ | ସେ ଶାନ୍ତ | — ଯେସନ |
| ୪୮ | ୭ | ପୁଣି | — ପଣି |
| ୬୦ | ୧୪ | ବଧି | — କ୍ଷଧି |
| ୬୧ | ୧୨ | ଚୂନ | — ସୁଧା |
| ୧୨୮ | ୨ | ଅସରନ୍ତଅ ସାରୁଁ | — ଅସରନ୍ତ ଆସାରୁଁ |
| ୧୩୬ | ୨୪ | ଖଦ୍ୟୋତର | — ଖଦ୍ୟୋତକ |
| ୧୪୩ | ୧୦ | ଚୁମ୍ବନ | — ଚୁମ୍ବକ |

---

# ବୈଜୟନ୍ତୀ



## ଶ୍ୟାମାଗମେ

—ଗୈରୀ—

ଧୀରେ ଧୀରେ ଅସେ ଧରା—
ଶୋଭା-ବରଧନ-କରା
ଶ୍ୟାମ ସୁଷମା-ପସରା
ଶଦ୍ଦଳଜାଳ,
ଶ୍ୟାମ ଲତା ଶ୍ୟାମ ପତ୍ର,
ଶ୍ୟାମାୟମାନ ସର୍ବତ୍ର,
ଶ୍ୟାମ ନଭେ ଛିନ୍ନଛତ୍ର
ଜଳଦମାଳ;
ଶ୍ୟାମାଙ୍କର ଶୁଭାଗମନେ,
ସରସେ ମଗନ ଶ୍ୟାମା ସାମ ଗାୟନେ । ୧ ।

ଶ୍ୟାମ ତରୁ ଶ୍ୟାମ ତୃଣ
ଶ୍ୟାମଳ ଧରା ମସୃଣ
ଶ୍ୟାମଳ ତମାଳ ପୁଣ
ଦ୍ୱିଗୁଣ ଗୃଢ଼,

କମଳିନୀ ଶ୍ୟାମ ସର
ଦଳେ ଶ୍ୟାମଳତର
ଶ୍ୟାମଚ୍ଛବି ଇନ୍ଦୀବର
ବିକଶିବାରୁ;
ଶ୍ୟାମ ଶସ୍ୟଶାଳୀ କେଦାରେ,
ଦୋଳଇ ମୃଦୁଳେ ଶ୍ୟାମାଞ୍ଚଳ ପ୍ରକାରେ । ୨ ।

ଶ୍ୟାମ ବିପିନ-ବୀଥିକା
ଶ୍ୟାମ ନିକୁଞ୍ଜ-ଲତିକା
ଶ୍ୟାମା-ବୋଧନ-ଗୀତିକା
ଗାଏ ଧରଣୀ,
ଶ୍ୟାମ ନଭେ ହସେ ଇନ୍ଦୁ
ସରଜି ଜୋଛନା-ସିନ୍ଧୁ
ସତେ କି ମନ୍ଦାର-ସୀଧୁ
ସୁରଧରଣୀ
ଢାଳି ସୁରପୁର ପ୍ରାଙ୍ଗଣେ,
ଶ୍ୟାମାଙ୍କ ସମ୍ଭାଷେ ସୁର-ଶ୍ୟାମାଗହଣେ ? ୩ ।

ସେ ଶ୍ୟାମଳ ସରସତା
ପରଶିଣ ତରୁ ଲତା
ନିଦାଘ ଖର ରୁକ୍ଷତା
ବିସୋରି ହେଲେ,
ବିମୋହନ ଶ୍ୟାମଚ୍ଛବି
ପ୍ରାଣେ ପ୍ରାଣେ ଅନୁଭବି
ଶ୍ୟାମରସେ ପ୍ରେମେ ଦ୍ରବୀ—
ଭୂତ କି ହେଲେ ?

ଶ୍ୟାମଲତା ପଡ଼େ ଉଚ୍ଛୁଳି,
ପଲ୍ଲବ-ପାଗଳ  ଶ୍ୟାମଶାଖୀ ମୁକୁଳି । ୪ ।

ଶିଖରଣୀ ସାର ଶ୍ୟାମ—
ସେନେହ-ସାଗରେ ସ୍ନାନ,
ପିଇ ନବଘନ-ଶ୍ୟାମ—
ରାଗ ମଦିର
ଶ୍ୟାମକଣ୍ଠ କେକା ଭାଷେ
ଚକିତେ ଚମକ ହାସେ
ଉନ୍ମାଦିନୀ ପ୍ରାୟେ ବା ସେ
ହର୍ଷେ ଅଧୀର,
ସତେ ଏ ଲାବଣ୍ୟନିଧିକି,
ଭଲେ ଆଜ ଶ୍ୟାମଳଠ ଲାଗିଲା ନିକି ? ୫ ।

କାହା ଅଙ୍ଗସଙ୍ଗ ଲଭି
ଛଟକେ ଗିରି ଅଟବୀ
ଏମନ୍ତ ଶ୍ୟାମଳଚ୍ଛବି
ହୋଇଲେ ସତେ,
କାହା ସ୍ନେହ ସନମାନ
ଲଭି ସିନ୍ଧୁ ମୂହ୍ୟମାନ
ହୋଇଛି ଶ୍ୟାମାୟମାନ
ଅନ୍ତରଗତେ;
(ଏ) ଶ୍ୟାମରାଗେ ଶ୍ୟାମ-ସୁହାଗେ,
ଭାସି ଭାସି ଆସେ କେ ଗୋ ଶ୍ୟାମାଙ୍କ ଆଗେ । ୬ ।

ଶ୍ୟାମାଙ୍କ ଶକୁଣ କେଶ
ପଗ୍ୟେ ଅମ୍ବରଦେଶ
ଅଛ ଅନମ୍ବର ବେଶ
ହୋଇଛୁ ଅଜ,
ଶ୍ୟାମଳ ତମାଳଶ୍ରେଣୀ
ପଲ୍ଲବୁଁ ନୀଳିମା ଫେନ
ଅଗସ୍ତ୍ୟ ତ ଭରିଁଲେଣି
ଦେବାକୁ ମାଜି
ସରସୀର ନୀର-ମୁକୁର
ଥୋଇ ଘନଶ୍ୟାମ-ବନଲକ୍ଷ୍ମୀଙ୍କମୂର । ୭ ।

ଶ୍ୟାମାଗମେ ଶ୍ୟାମମୟୁ
ହେଲେ ଦଗଙ୍ଗନାଚୟୁ
ଶ୍ୟାମାଙ୍କଣ୍ଠେ ଶ୍ୟାମ ଜୟୁ
ପଡ଼େ ଉଚ୍ଛୁଳି,
ସେ ସ୍ନିଗ୍ଧ ସୁଧା-ସରସ
ମୋହନ ଶ୍ୟାମପରଶ
ଲଭି ଅଜ ମୋ ମାନସ
ଉଠେ ମୁକୁଳି,
ଅବଳ ମୋ ହୃଦସରସୀ
କେଉଁ କୁମ୍ଭଯୋନ* ହାସ୍ୟେ ଉଠେ ଉଲ୍ଲସି । ୮ ।

---

*କୁମ୍ଭଯୋନ—ଅଗସ୍ତ୍ୟ

ଏ ଶ୍ୟାମ ସୁଷମାରାଜ
ପରଶେ ମୋ ପ୍ରାଣେ ଆଜ
ଅଚମ୍ବିତେ ଉଠେ ବାଜ
ମରମ-ବୀଣା,
କାମନା-କନକ-କାନ୍ତ
ନ ଭିଆଇ ଭବଭ୍ରାନ୍ତ
ଏ ଶ୍ୟାମ-ସୁଷମା-ଶାନ୍ତ-
ସରେ ବଳୀନା;
ଏ ଶ୍ୟାମଶୋଭାକୁ ନଚେଣି,
ଶ୍ୟାମଘନ ଭାଲି ନାଚେ ମୋ ହୃଦକେକୀ ।୯।

ସେ ଶ୍ୟାମ ଅବଗୁଣ୍ଠନେ
ଲୁଚ କେ ଗୋ କ୍ଷଣେ କ୍ଷଣେ
ଛଟକେ ଅଡ଼ ନୟନେ,
ବଙ୍କେଲେ ଗ୍ରୀହିଁ,
ଚପଳାଚମକ ପ୍ରାୟେ
ନିମିଷେ ଉଭେଇଯାଏ
ଝିଲ ବସ୍ତ୍ରେ ତୁଳନା ଏ
ରୂପକୁ ନାହିଁ;
ସେ ଶ୍ୟାମସୁନ୍ଦର ମାଧୁରୀ,
ଅନୁଭବ ବ୍ୟୋମ ସିନ୍ଧୁ ତୁଅନ୍ତ ଝୁରି ।୧୦।

---

# ତାଜମହଲେ

୧

ଶୁଣିଛୁ ତୁ ଯମୁନେ ଗୋ ଭ୍ରମି ଦେଶେ ଦେଶେ
କେତେ କେତେ ପ୍ରେମାମୃତ-କଥା,
ତୋ ନୀରେ ମିଶିଛୁ କେତେ ବିରହିଣୀଙ୍କର
ଅଶ୍ରୁମୟୀ ବିରହର ବ୍ୟଥା ।
ଚୁମ୍ବି କେଳି-କଦମ୍ବର ଚରଣ ସବେଗେ
ଭ୍ରମି ବୃନ୍ଦାବିପିନ ପୁଳିନେ ,
ସେ ମଧୁର ପ୍ରେମଲୀଳା ଲୀଳାମୟଙ୍କର
ମହାନନ୍ଦେ ଦେଖିଥିଲୁ ଧନେ ।
ବକ୍ଷେ ଧରିଥିଲୁ ତୋର, ଅୟି ଭାଗ୍ୟବତି !
ସେ ମଧୁର ଯୁଗଳ ମୂରତି,
ଶୁଣିଥିଲୁ ପ୍ରେମମୟୀ ଗୋପାଙ୍ଗନାଙ୍କର
ପ୍ରେମର ସେ ଅସ୍ଫୁଟ ଭାରତୀ ।
ନାଚିଥିଲୁ ତାଳେ ତାଳେ ଆନନ୍ଦ ନର୍ତ୍ତନେ
ସେ ମୋହନ ମୁରଲୀ ନିଃସ୍ୱନେ,
ସେ କାଳେ ପୁଳିନ ତୋର କରି ମୁଖରିତ
ମୃଦୁ-ମନ୍ଦ ମଞ୍ଜୀର-ନିକ୍ୱଣେ,
ପ୍ରେମେ ଉନ୍ମାଦିନୀ ବ୍ରଜକିଶୋରୀଏ ନିତି
ବାହାରି ନିକୁଞ୍ଜ ଅଭିସାରେ
ଯାଉଥିଲେ ତୀରେ ତୋର, ନିକୁଞ୍ଜ ବୀଥିକା
ଝଲସାଇ ଶ୍ରୀଅଙ୍ଗପ୍ରଭାରେ ।

ପୁଣି ଯେବେ ସୁକୁମାରୀ ବୃଷଭାନୁକେମା
ହରାଇ ସେ ନିକୁଞ୍ଜନାୟକେ
କାନ୍ଦିଲେକ, କାଳିନ୍ଦି ଗୋ, ତୋର ତୀରକୁଞ୍ଜେ
ତୋ ପୁଳିନ ଭସାଇ ଲୋତକେ
ଅନ୍ତରଙ୍ଗ ଦୂତୀପ୍ରାୟେ ତୁହି ଗୋ ସେକାଳେ
ସେବିଥିଲୁ ଶ୍ରୀମତୀ ଶ୍ରୀପଦେ ;
ବକ୍ଷେ ଧରି ଶ୍ରୀମତୀଙ୍କ ଅଶ୍ରୁମୟୀ ଲିପି
ବହିଥିଲୁ ବିଷାଦଗଦ୍‌ଗଦେ ।
ମଥୁରା 'ବିଶ୍ରାମ' ଘାଟେ ଭ୍ରମି ଜଉରଲେ
ଶିଳାରୋଧେ ଶୋକେ ପିଟି ଶିର
ନିବେଦଣି ଥିଲୁ ସେହି ବିରହବେଦନା
ବିରହିଣୀ ଶ୍ୟାମପ୍ରେୟସୀର ।
ସେ ମଧୁର ପ୍ରେମଲୀଳା ସମ୍ଭୋଗ ଯାହାଙ୍କ
ଭାଗ୍ୟେ ଘଟିଥିଲା ରେ ତଟିନି !
ସର୍ବେ 'ଅପ୍ରକଟ' ଅଜି, ଅଛୁ ମାତ୍ର ତୁହି
ସେ ଲୀଳାର ଅମରସାକ୍ଷିଣୀ ।
ନାହିଁ ସେହି ବଂଶୀବଟ, ନାହିଁ ନୀପତରୁ,
ନାହିଁ ସେହି ନିକୁଞ୍ଜ କାନନ,
ନାହାନ୍ତି ସେ ଶୁକ ଶାରୀ ମୟୂର ମୟୂରୀ
ନାହିଁ ତ ସେ ଗିରି ଗୋବର୍ଦ୍ଧନ ।
ଅଛୁ ମାତ୍ର ଏକାକିନୀ ତୁ ପ୍ରେମରୂପିଣୀ
ଘୋଷିବାକୁ ସେ ପ୍ରେମମହିମା
ନୀଳ ତନୁ ଲାଗି ତେଣୁ ନୀରବେଣୀ ତୋର
ପ୍ରେମେ କି ରେ ଭଜନ୍ତି ନୀଳିମା ?

ସେ କଳାଶ୍ରୀମୂର୍ତ୍ତିଟା କେମନ୍ତ ସୁନ୍ଦର
ଦେଖାଇବା ଲଗି ଜଗଜ୍ଜନେ
ସେ ମୁଖର ପ୍ରତିବିମ୍ବ ନୀଳାମ୍ବୁ ହୃଦୟେ
ବହୁଛୁ ବା ପରମ ଯତନେ ।
ଭବ-ବିପଣୀରେ ପ୍ରେମ-ମଣିର ମର୍ଯ୍ୟାଦା
ତୋ ପରି କେ ଅଛଇ ରେ ଜାଣି
ତେଣୁ ତୋର ରମ୍ୟତୀରେ ଏ ପ୍ରେମ-ସନ୍ଦିକ
ନିର୍ମାଣିଛୁ ସୁବୁଦ୍ଧି ବିଦ୍ଧାଣୀ ।
ଯୋଗ୍ୟେ ଯୋଗ୍ୟ ସମାବେଶ କରିଛୁ ବିଧାନ
ମଣି ସଙ୍ଗେ ମିଳାଇ କାଞ୍ଚନ,
ସ୍ୱର୍ଗେ ମନ୍ଦାକିନୀତୀରେ ନନ୍ଦନକାନନେ
ଫୁଲ୍ଲ ପାରିଜାତକ ଯେସନ ।
ଏ ପ୍ରେମ-ପାରିଜାତଟି ଧରି ହୃଦୟରେ
ନାଚୁ ନଦୀ ଉଲ୍ଲୋଳ କଲ୍ଲୋଳେ,
ପ୍ରେମର ମହିମା ପରି କରଣ କୀର୍ତ୍ତନ
ଗାଉ ଗୀତ କଳକଳ ରୋଳେ ।

୨

ଦେବେନ୍ଦ୍ରନିୟୋଗେ ସର୍ବେ ଦେବାସୁରେ ମିଳି
କଲେ ଯେବେ ସାଗର ମନ୍ଥନ,
ଉଠିଲେ ବରୁଣପୁରୁ ଲକ୍ଷ୍ମୀ ପଦ୍ମାଳୟା,
ଉଠିଲାକ ମନ୍ଦାର ସୁମନ ।

ତେସନ, ନରେନ୍ଦ୍ର ! ତବ ଭାରତଭବନେ
ରାଜଭକ୍ତ ପ୍ରକୃତିପୁଞ୍ଜର
ସୁଗଭୀର ପ୍ରେମସିନ୍ଧୁ ମଥି ଲଭିଲ ଏ
ଉପହାର ପ୍ରଜାରଞ୍ଜନର ।
ଲଭିଲ ସାମ୍ରାଜ୍ୟ-ଲକ୍ଷ୍ମୀ ଶାନ୍ତ-ସୁଧାମୟୀ
ବିପୁଳ-ବିଭବ-ବିଳାସିନୀ
ଗୃହିଣୀ ଛାଡ଼ି ଚଞ୍ଚଳା ହୋଇଥିଲେ ସଦା
ତବ କୋଠଭଣ୍ଡାର-ବାସିନୀ ।
ମଣି ମାଣିକ୍ୟରେ ସଦା ପୂର୍ଣ୍ଣ ଥିଲା ତବ
ରାଜକୋଷାଗାର ନୃପମଣି
ନୃତିରଞ୍ଜନବ୍ରତ ପାଳନରେ ଯେଣୁ
ଥିଲ ତୁମ୍ଭେ ସମ୍ରାଟ ଅଗ୍ରଣୀ ।
ସେ ପ୍ରେମସିନ୍ଧୁ-ମନ୍ଥନୁ ଲଭିଲ ଅବର
ପ୍ରେମର ଏ ଶୁଭ୍ର ପାରିଜାତ,
ଅପରୂପ ଶୋଭାରାଶି ଯାର ମହାଯଶ
ହୋଇଅଛି ଭୁବନବିଖ୍ୟାତ ।
କେଶରେ କେଶରେ ଯାର ହୋଇଛି ଅଙ୍କିତ
ଭାରତର ଅତୀତ ଗୌରବ,
ମହକି ଉଠଇ ପ୍ରତି ଅଙ୍ଗେ ଅଙ୍ଗେ ଯାର
ଗୃହକଳା ଲଳିତ୍ୟ ସୌରଭ ।
ହେ ପ୍ରଜାବତ୍ସଳ ! ତବ ରାଜଛତ୍ର ତଳେ
ପୁତ୍ର-ନିର୍ବିଶେଷ ସୁଶାସନେ
ସ୍ୱଚ୍ଛନ୍ଦେ ଭାରତବାସୀ ଯାପୁଥିଲେ ଦିନ
ନିପୀଡ଼ିତ ନୋହି ଅନଶନେ ।

ତୁମ୍ଭଙ୍କୁ ମାନବରୂପୀ ଭଗବାନ ଭାବ
ପୂଜୁଥିଲେ ଆନନ୍ଦ ଗଦ୍‌ଗଦେ
ସରବସ୍ୱ ତାଙ୍କ ସୁଖେ ଦେଉଥିଲେ ଢାଳି
ଦଲ୍ଲୀଶ୍ୱର-ପଦ-କୋକନଦେ ।
ତାଙ୍କ ପ୍ରେମ, ତାଙ୍କ ଭକ୍ତି, ତବ ସୁଶାସନ
ତବ ପ୍ରଜାବାତ୍ସଲ୍ୟ ଅବର
ପ୍ରାଞ୍ଜଳ ଭାଷାରେ ଏହି ସ୍ଫଟିକ ଦେହରେ
ଅଙ୍କିତ ହୋଇଛି ନୃପବର ।
ପ୍ରିୟାର ବିଚ୍ଛେଦେ ଯେବେ ତବ ନୟନରୁ
ବହିଲା ହେ ତପ୍ତ ଅଶ୍ରୁଧାର
ସମଗ୍ର ଭାରତବାସୀ ହୃଦୟୁଁ ବହିଲା
ଅଶ୍ରୁଧାର ସମ-ବେଦନାର ;
ତେଣୁ ଏହା ନୁହେ ଏକା ତବ ଶୋକଚ୍ଛବି
ନୁହେ ଏକା ତବ ସ୍ମୃତିଚିହ୍ନ,
ଫୁଟି ବାହାରଇ ଏଥି ଖିଳ ଭାରତର
ଶୋକଦଗ୍ଧ ହୃଦୟ ଅଭିନ୍ନ ।
ତବ ଦୁଃଖେ ସମଦୁଃଖୀ ପ୍ରକୃତିପୁଞ୍ଜର
ମର୍ମଭେଦୀ ବିଷାଦସଙ୍ଗୀତ
ଏ ଶ୍ୱେତ ମର୍ମ୍ମରପଟେ ନୀରବ ଭାଷାରେ
ସୁକରୁଣେ ହୋଇଛି ଲିଖିତ
ଅବା ସେ ବେଦନାପୁଞ୍ଜ ଝରି ଅଶ୍ରୁରୂପେ
ପରିଣତ ହୋଇ କରକାରେ
ସେ ଦୀର୍ଘ ଦୁର୍ଦ୍ଦିନେ ହୋଇଗଲା ଘନୀଭୂତ
ଏ ମର୍ମର ପାଷାଣ ଆକାରେ ।

ଶୋକକ୍ଷତ ହୃଦୟରୁ ଅଶ୍ରୁଧାରା ସଙ୍ଗେ
ବହୁ ତାଙ୍କ ହୃଦୟଶୋଣିତ,
ବିରହର ଏ ମର୍ମର ମୂରତ ଅଙ୍ଗ ବା
ନାନା ରଙ୍ଗେ କରିଛି ରଞ୍ଜିତ ।

୩

ପ୍ରଗାଢ଼ ଦାମ୍ପତ୍ୟପ୍ରେମ ତବ ନୃପମଣି
କେମନ୍ତେ କେ କଳିବ ହେ ଅଜ୍ଞ,
କେ କଳି ପାରିବ ସୀମା ଅନନ୍ତ ସିନ୍ଧୁର
କେ ଗଣିବ ତହିଁ ଊର୍ମିରାଜି ?
ବହୁଛି ମହାସାଗର ଅସୀମ ଗମ୍ଭୀର
ନାହିଁ ଅନ୍ତ, ଅତଳ ପରଶି
ଊର୍ମି ପରେ ଖେଳେ ଊର୍ମି, ତରଙ୍ଗେ ତରଙ୍ଗ,
ଦେଖେ ପାନ୍ଥ ତୀରଦେଶେ ବସି ।
ବିସ୍ମୟେ ସ୍ତବଧ ହୃଦୟା, ମୋହିତ ପରାଣ,
ମୁହ୍ୟମାନ ଶକ୍ତିବୃତ୍ତିଚୟ
ସେ କି କହି ପାରେ ମହାସିନ୍ଧୁର ଇୟତ୍ତା
ହୃଦ ଯାର ଧରୁ ନାହିଁ ଥୟ ?
ଭାସିଯାଏ ମନ ତାର କେଉଁ ଦୂରଦେଶେ
ନାଚି ନାଚି ତରଙ୍ଗେ ତରଙ୍ଗେ
ହୋଇଯାଏ ଘନ ଘନ ଆତ୍ମବିସ୍ମରଣ
ପୁଲକ ସ୍ପନ୍ଦନ ସଙ୍ଗେ ସଙ୍ଗେ ।

ସେହି ଦଶା ସିନା ମୋର ଅଜ ନୃପମଣି
ବସି ତବ ପ୍ରେମସିନ୍ଧୁ କୂଳେ
ଅନୁମାନ, ଅନୁଭବ, କଳ୍ପନା, ବିବେକ
ପରାଜୟେ ଫେରନ୍ତି ବ୍ୟାକୁଳେ ।:
ସେ ମହାପ୍ରେମସିନ୍ଧୁରୁ ଏ କ୍ଷୁଦ୍ର ଊର୍ମିଟି
ଦେଖିଛି ସେ ଅନନ୍ତ ସିନ୍ଧୁ ସୀମା
କେମନ୍ତେ କଳିବ ମୁହିଁ କ୍ଷୁଦ୍ରବୁଦ୍ଧି ନାରୀ
ସେ ପ୍ରେମର ସ୍ୱର୍ଗୀୟ ମହିମା ।

୪

ଜୀବନର ମଧୁମାସେ ପ୍ରମୋଦ ଭବନେ
ପ୍ରିୟାସଙ୍ଗେ ମାତି ନାନା ରଙ୍ଗେ
ଯାପିଲ ଯାମିନୀ ଯେବେ ଯୌବନସୁଲଭ
ମଧୁମୟ ପ୍ରଣୟ-ପ୍ରସଙ୍ଗେ,
ସେକାଳେ ସେ ଅପାର୍ଥିବ ପ୍ରେମର କାହାଣୀ
କେହି କି ନ କଲେ ଲିପିବଦ୍ଧ,
ଭାବି କଳପନା ମୋର ହୁଅଇ ବ୍ୟାକୁଳ
ଯଥା ପକ୍ଷୀ ପିଞ୍ଜରେ ଅବଦ୍ଧ ।
କେମନ୍ତ ସୁଧାମଧୁର ବଚନ ଭାଷିଣ
ସୁଭାଷିଣୀ ତବ ପ୍ରିୟତମା,
ମୋହୁଥିଲେ ମନ ତବ ସେ ବିଶ୍ୱମୋହିନୀ
ନିତମ୍ବିନୀ ସୁରୁଚିମଧ୍ୟମା ।

ବୀଣାଜିଣା କଣ୍ଠେ ତୋଳି ସଙ୍ଗୀତ ମୂର୍ଚ୍ଛନା
ମୋହି ମନ ମୋହନଙ୍କୁ ଯହିଁରେ
କୁରଙ୍ଗନୟନ କୋଣେ ତରଙ୍ଗ ଗୃହିଣୀ
ଚାହୁଁଥିଲେ ଯେବେ ତୃପ୍ତିଭାରେ;
କେଡ଼େ ସୁମଧୁର ସେହି ଉଚ୍ଚରିତ ବଚନ
କେଡ଼େ ମିଷ୍ଟ ସେ କଣ୍ଠର ଧ୍ୱନି,
କେହି କି ଶୁଣିଛୁ ତାହା ? କେବା ତବ ସମ
ଭାଗ୍ୟବାନ ଭବେ ନୃପମଣି !
ପ୍ରଭାର ଝଲକେ ଝଳି ନବରପ୍ରାଙ୍ଗଣ
ସୌନ୍ଦର୍ଯ୍ୟର ତରଙ୍ଗ ଖେଳାଇ,
ମନ୍ଥର ଗମନେ ଯାଉଥିଲେ ନିତମ୍ବିନୀ
ଯେବେ କେଳିସଦନେ ଚଳାଇ ।
ଖେଳିଯାଉଥିଲା ଗୃହୁ ଚପଳା ଚମକ
ଚୀନାଂଶୁକ ଅଞ୍ଚଳ ନଚିନେ,
ଚରଣେ ମୂରୁଚ୍ଛି ପଡ଼ୁଥିଲା ପୁଷ୍ପଧନୁ
ମଣିମୟ ମଞ୍ଜୀର ନିକ୍ୱଣେ ।
ଛଟକେ ହାଟକଗୋଷ୍ଠେ ପଶି ସ୍ନାନାଗାରେ
ବସ୍ତ୍ର ଉତାରି ବେଶଭୂଷା,
କୁସୁମନିର୍ଯ୍ୟାସେ ସ୍ନାନ କରୁଥିଲେ ଯେବେ
ଅନନ୍ତଯୌବନା ଗୃହଦ୍ୟୁଶା ।
ସେ ନଗ୍ନ ସୌନ୍ଦର୍ଯ୍ୟଛଟା ପ୍ରତିବିମ୍ବ ତାଳି
ଶତ ମଣି-ମାଣିକ୍ୟ-ମୁକୁରେ,
ବସାଇ ଚନ୍ଦ୍ରମାହାଟ ଗୃହଚନ୍ଦ୍ରାନନୀ
ସ୍ନାନାଗାର ପ୍ଲାବି ପ୍ରଭାପୂରେ ।

ସେ ନଗ୍ନ ଶୋଭାବଭବ ସେ ରୂପ ଯୌବନ
କେହ୍ନ କ ଦେଖିଛୁ ରବାଉଲେ,
ଏମନ୍ତ ସହସ୍ର ପ୍ରଶ୍ନ କଳ୍ପନାସୁନ୍ଦରୀ
ରହ୍ନ ରହ୍ନ ପୁଛେ କୌତୂହଳେ ।।

୫

ସୌନ୍ଦର୍ଯ୍ୟ-ଅଧିଦେବୀଙ୍କି ପାଇ ପ୍ରିୟାରୂପେ
ହେ ସୌନ୍ଦର୍ଯ୍ୟ ପୁରୋଧାପ୍ରବର ।
କେମନ୍ତେ କ ଉପଚାରେ ପୂଜୁଥିଲ ବା ସେ
ଅପରୂପ ରୂପ ମନୋହର ।
କ ମଧୁର ସମ୍ଭାଷଣେ କ ମୃଦୁ ବଚନେ
ତୋଷିଣ ସେ ରମାମଣି ମନ
ଲଭିଥିଲ ତାର ପ୍ରେମ, ହେ ରାଜପ୍ରେମିକ !
ସୁଦୁର୍ଲଭ ଅମୂଲ୍ୟ ରତନ ।
ସେ ପ୍ରେମର ବିନିମୟେ ସରବସ୍ୱ ତବ
ଦେଇ ପ୍ରଣୟର ଉପହାର
ପ୍ରେମର ଋଙ୍କର ପ୍ରାୟେ ସେବୁଥିଲ ପଦେ
ସେ ନ୍ୟଗ୍ରୋଧ-ପରିମଣ୍ଡଳାର ।
ଏ ତଥ୍ୟ ଜାଣିବା ପାଇଁ କଳ୍ପନା ମୋହର
ସତତ ଉତ୍ସୁକ ନରସାଇଁ,
ଏ ମଧୁର ରହସ୍ୟର ରତନ ମଞ୍ଜୁଷା
ମୋ ଆଗେ କେ ଦେବ ମୁକୁଳାଇ ।।

ସୁଖ ତ କ୍ଷଣିକ ଭବେ; କ୍ଷଣପ୍ରଭାସମ
କ୍ଷଣସ୍ଥାୟୀ ପ୍ରଭା ଦରଶାଇ
କ୍ଷଣକେ ଲୁଚଇ ମ୍ଳାନ ଦୁଃଖ-ଘନକୋଳେ
ଚିଦାକାଶ ତମିରେ ବୁଡ଼ାଇ,
ତବ ଏ ପ୍ରେମ ସ୍ୱପନ ତଥା, ନରନାହା,
ଉଭେଇଗଲା ଅବିଳମ୍ବେ,
ଜୀବନ-ଆକାଶ ହୋଇଗଲା ଆଚ୍ଛାଦିତ
ବିଚ୍ଛେଦର ଜୀମୂତ-କଦମ୍ବେ ।
ତବ ଅଙ୍କ-ପର୍ଯ୍ୟଙ୍କରୁ ନିର୍ମମ ବିଧାତା
କାଢ଼ିନେଲା ତବ ପ୍ରେୟସୀକି
ମତ୍ତଦନ୍ତାବଳ ଯଥା ପଶି ପଦ୍ମବନେ
ସନାଳ କମଳେ ନିଏ ଝିଙ୍କି ।
ଭାଙ୍ଗିଗଲା ପ୍ରେମହାଟ, ତୁଟିଲା ସ୍ୱପନ,
ଜୁର ହେଲା ପ୍ରମୋଦ ଭବନ,
କେମନ୍ତେ ଧଇର୍ଯ୍ୟ ଧରି ରହିଲ ଜୀବନେ
ହରାଇ ସେ ପ୍ରେମିକା-ରତନ ?
ଦାରୁଣ ବିରହାନଳେ ଜଳି ଦିବାନିଶି
ପ୍ରିୟାସ୍ମୃତି ଗୁଣି ମନେ ମନେ
କେମନ୍ତେ ରାଜେନ୍ଦ୍ର, ପୁଣି ବିଦଗ୍ଧ ଚିତ୍ତକୁ
ନିୟୋଜିଲ ସାମ୍ରାଜ୍ୟ ଶାସନେ ।
ପ୍ରିୟାର ପ୍ରଣୟ-ସ୍ମୃତି ପରମପବିତ୍ର
ଫିଙ୍ଗି ତ ନ ଥିଲ ହୃଦୟରୁ,
କେମନ୍ତେ ଉତ୍ତୀର୍ଣ୍ଣ ହେଲ ତୃଷାତୁର କଣ୍ଠେ
ମରୀଚିକାମୟ ଭବମରୁ ।

ଅବା ସେ ସ୍ମୃତିକୁ କର ଚରମ ସମ୍ବଳ
ଜୀବନର ଧ୍ରୁବ ତାରା ମଣି
ଅନନ୍ତକାଳ ସାଗରେ ବାହିଲ ତୁମ୍ଭର
ଜରାଜୀର୍ଣ୍ଣ ଜୀବନ-ତରଣୀ ।
ଦୂରେ ପୋତାଶ୍ରୟେ ପରା ପ୍ରିୟତମା ସଙ୍ଗେ
ଭେଟ ହେବ ଭବସିନ୍ଧୁ ତୀରେ
ଏମନ୍ତ ଭରସି ଚିତ୍ତେ ଅନନ୍ତ ଉଦ୍ଦେଶେ
ବାହିଲ ଜୀବନତରୀ ଧୀରେ ।
ବିଚାରିଲ ଯିବା ଆଗୁଁ ରଖିଯିବା କିଛୁ
ଏ ଅମର ପ୍ରେମର ସନ୍ତକ
କାଳ ଗର୍ବ ଖର୍ବ କରି ରହିବ ଯା ଚିର
ତବେ ମମ ପ୍ରିୟାର ସ୍ମାରକ ।
ଅଙ୍କିବ ସେ ପ୍ରେମଛବି ଅମର ଅଙ୍ଗନେ
କାଳବକ୍ଷେ ରାଜିବ ଯା ଚିର
ସତତ ଚଞ୍ଚଳ କାଳସାଗର ତରଙ୍ଗେ
ବିଚଳିତ ନୋହି ଥିବ ସ୍ଥିର ।
ପ୍ରାଣାଧିକ ପ୍ରିୟ ତବ ପ୍ରଜାବୃନ୍ଦ ସର୍ବେ
ଜାଣି ତବ ଏହୁ ମନ କଥା
ନିୟୋଜିଲେ ତବ କାର୍ଯ୍ୟେ ସର୍ବସ୍ୱ ତାଙ୍କର
ପିତୃ-ପଦେ ପ୍ରିୟପୁତ୍ର ଯଥା ।
ସମର୍ପିଲେ ଧନ ମନ ଉଦ୍ୟମ ଉତ୍ସାହ
ଜ୍ଞାନ ବୁଦ୍ଧି ପରିଶ୍ରମ ଚେଷ୍ଟା,
ସ୍ଥାପତ୍ୟ ରଞ୍ଜନବିଦ୍ୟା ସଙ୍ଗେ ନିବେଦିଲେ
ସୁକୁମାର କଳା ପରାକାଷ୍ଠା ।

ଅନନ୍ତ ଶାସ୍ତ୍ର-ସମୁଦ୍ର ମନ୍ଥି ମହାନନ୍ଦେ
ସର୍ବ ବିଦ୍ୟାସାର ଚିନ୍ତାମଣି
କବିତା ଗାନ୍ଧର୍ବବିଦ୍ୟା ସ୍ଥାପତ୍ୟ ରଞ୍ଜନ
ଏକାଧାରେ ତୂଳ କଲେ ଆଣି ।
ମନ ପ୍ରାଣ ନିୟୋଜଣି ରଚିଲେ ଯତନେ
ଏ ସୁନ୍ଦର ମନ୍ଦିର-ରତନ,
ସେଦିନୁଁ ହୋଇଲା ଏହା ପ୍ରେମଦେବଙ୍କର
ସୁମଞ୍ଜୁଳ ନିକୁଞ୍ଜ ସଦନ ।
ଭଙ୍ଗୁର ଭବେ ସକଳ ମୂହୂର୍ତ୍ତିବିଧ୍ୱଂସୀ
ହେଲେହେଁ ଏ ଅମର କୀରତି
ବହୁଭାଗ୍ୟ ବିପର୍ଯ୍ୟେ ହେ ପ୍ରେମିକରାଜ,
ଚିରକାଳ ରହିବ ବିରତି ।
କରାଳ କାଳ ସଙ୍ଗତେ ଯୁଝି ଘୋର ରଣେ
ପ୍ରେମ-ବୈଜୟନ୍ତୀ ବାନା ଧରି
ଘୋଷିବ ପ୍ରେମର ଜୟ ଅମର ସଙ୍ଗୀତେ
ଜୟନାଦେ ଦିଗନ୍ତ ମୁଖରି ।
ଯଦି କେବେ କଦାଚିତେ ଦୂରଭବିଷ୍ୟତେ
ସେ କାଳ ସଂଗ୍ରାମେ ଯାଏ ହାରି
—ନ କରନ୍ତୁ କ୍ଷଣ ତାହା-କିଛୁମାତ୍ର ତହିଁ
ନାହିଁ ଭୟ ଅଜ,ଦଣ୍ଡଧାରୀ ।
ତବ ପ୍ରିୟାସ୍ମୃତି ଯେଣୁ ହୋଇଛି ଅମର,
ନାହିଁ ଅଜ ବିଲୟ ତାହାର,
ଯାବତ ବହିବ ଭବେ ଭବଦୁଃଖହାରୀ
ପ୍ରଣୟର ସୁରଧନୀ ଧାର;

ତବ ଏ ଅମର ପ୍ରେମକାବ୍ୟର ସୌରଭ
ଭାବତ ମୋହିବ ନରଚିତ୍ତ;
ନାହିଁ ତ ନଗରୀ 'ଟ୍ରୟ', ହେଲେନାସୁନ୍ଦରୀ,
ଅଛୁ ମାତ୍ର କବୀନ୍ଦ୍ରସଙ୍ଗୀତ ।
ନାହିଁ ସେ କନକଲଙ୍କା, ଅଯୋଧ୍ୟାନଗରୀ,
କାଳଗର୍ଭେ ହେଲେଣି ବିଲୀନ;
ଅଦ୍ୟାପି କବିଗୁରୁଙ୍କ ପୂତ-ଲେଖନୀରୁ
ହେଉଅଛୁ ପୀୟୂଷ କ୍ଷରଣ,
ନାହିଁ ସେ 'ମୟ'ନିର୍ମିତ ଗୃହୁ ଇନ୍ଦ୍ରପ୍ରସ୍ଥ,
ନାହିଁ ଅଜ ଦ୍ୱାରାବତୀ ପୁରୀ,
ମାତ୍ର କାହିଁ ଯିବ, ନୃପ, ଦ୍ୱୈପାୟନଙ୍କର
ସୁଧାମୟୀ ଭାରତୀ ମାଧୁରୀ ।

---

# ପୁନଃ ତାଜମହଲେ

ହେ ସୁନ୍ଦର ସମ୍ରାଟମହିଷି !
ସତତ ଏ ପ୍ରଶ୍ନ ମୋର ମନେ ମନେ ଜାଗେ ଦିବାନିଶି ।
ଅଲୌକସାମାନ୍ୟ ତବ ସେ ରୂପଗରିମା
ସତେ କି ଯାଇଛି ମିଶି
ଧରିଧୂଳି ସଙ୍ଗେ ?
ଲାବଣ୍ୟତରଙ୍ଗେ
ଯାର
କଳ୍ପନାମୋହର
ଭାସି ଭାସି ଯାଏ ଲଙ୍ଘି ଦେଶ କାଳ ସୀମା
ନବ ନବ ସୃଷ୍ଟି ଛବି କରି ବିରଚନା
ମାନସରଞ୍ଜନ
ସତେ କି ସେ ରୂପ ନିରୁପମ
ମୃଣ୍ମୟ ଏ ଶରୀରବିଭଙ୍ଗେ
ମ୍ଳାନ ହେଲା ଧରଣୀ ଉତ୍ସଙ୍ଗେ ?
ସତେ କି
ସତେ କି ତବ ସେ ବଧୂବଦନେ
ବିମୋହନ ଦଶନବିଭାରେ
ତ୍ରିଭୁବନ ମୁଗ୍ଧ ଯାହା ଦେଖି
ସତେ କି ସେ ମୃଦୁ-ମନ୍ଦ ହାସ୍ୟ
କାଳର କରାଳ ଆବର୍ତ୍ତନେ
ଝଡ଼ି ପଡ଼ିଅଛି ତଳେ ଆଜ
ଯଥା ପୁଷ୍ପରାଜ

ଝଡ଼ପଡ଼େ ଶାରଦ ନିକୁଞ୍ଜେ
ପୁଞ୍ଜେ ପୁଞ୍ଜେ,
ହେମନ୍ତର ଶୀତ ସମୀରଣେ
ପଦ୍ମବନେ
ମଉଳଇ ନଳିନୀ ଯେସନେ ।
ତେସନ କି ହେ ସୁନ୍ଦରି ତବ ଅଙ୍ଗଲତା
ମଉଳିଲା ଚିରକାଳ ପାଇଁ
ସେ ସରସ ସ୍ନିଗ୍ଧ କୋମଳତା
ହେଲା ଧରଶାୟୀ
ଚିରକାଳ ପାଇଁ ?
ଅଧର ପ୍ରବାଳଦୀପେ ହାସ୍ୟମୟୀ ହୀରକର ଘଟା
ଅନିନ୍ଦ୍ୟସୁନ୍ଦର କୁନ୍ଦଦଶନର ଛଟା
ଲୁଚିଲା କି ଧରା ଅପଘନେ
ମହାମୃତ୍ୟୁମସୀ ଅବରଣେ ?
ଯେ କୁରଙ୍ଗନୟନର ଭ୍ରୂଭଙ୍ଗ ବିଳାସେ
ମହା ହାସେ
ଫିଙ୍ଗି ପୁଷ୍ପଧନୁ
ଆପଣେ ଅତନୁ
ଭରତଟେ ଯାଇ ମହ ଭୟେ
ଲୋଡ଼ିଥିଲା ଅଭୟ ଆଶ୍ରୟ
ଚିରମତ୍ତ କୁସୁମାସ୍ତ୍ରର ସମ୍ରାଟହୃଦୟେ
ସେ କି କାଳପଟେ
ଦୁରନ୍ତ ସଂହାରୀ କରେ ଲଭି ପରାଜୟ
ହୋଇଛି ଚିରମୁଦ୍ରିତ ?
—ସୁନିଷ୍ଟ ଡ ।।

'ହେ ସୁନ୍ଦର, ଅନାଦ୍ୟସୁନ୍ଦର,
ତପର
ତା କରବ ବିଶ୍ୱାସ
ପରତେ ନ ଯାଏ ମନେ
ଦୀର୍ଘଶ୍ୱାସ
ଉଠେ ଘନେ ଘନେ
ସେ କଥା ସ୍ମରଣେ
କେ କହେ ତା ହୋଇଛି ମଳିନ ?
ସେ ଯେ ମୃତ୍ୟୁହୀନ
ଅମର ସୁଷମାରାଜ, ଶାଶ୍ୱତ ସୁନ୍ଦର,
ନାହିଁ ତହିଁ ମୃତ୍ୟୁର ପ୍ରବେଶ;—
ଭେଦ କ୍ଷଣ ସୁପ୍ତ ପ୍ରିମାତର
ଲଭି ନବୋନ୍ମେଷ
ଉଠଇ ସେ ସୌନ୍ଦର୍ଯ୍ୟର ଶାଶ୍ୱତ ନିର୍ଝର
ମନୋହର ।
ସେ ଶାନ୍ତ ସରସ ସ୍ନିଗ୍ଧ ପୀୟୂଷ ସିଞ୍ଚନେ
ନିଦାଘ ଦଗଧ ଉପବନେ
ଫୁଟଇ କେଳିକଦମ୍ବ ପରମ ମଞ୍ଜୁଳ
ବର୍ଷାଗମେ
ଅଳିକୁଳ
ମତ୍ତ ହୋନ୍ତି ପ୍ରମତ୍ତଗୁଞ୍ଜନେ ।
ଫୁଟନ୍ତି କୁସୁମ ରାଶି ରାଶି
ଶ୍ୟାମଘନ ଅମ୍ବରବିଳାସୀ

ଜଳେ ସ୍ଥଳେ ଝାଡ଼େ ବାଡ଼େ ପାଷାଣେ ପ୍ରାନ୍ତରେ
ସୌନ୍ଦର୍ଯ୍ୟଲହରୀ ଖେଳେ କୁସୁମ ବନାଶେ
ଯଥା ପୂର୍ବେ ଜାହ୍ନବୀ ପରଶେ
ଅମର ଜୀବନ ଲଭି ଅଦ୍ଭୁତ ଛନ୍ଦରେ
ଉଠିଲେକ ଶାପଭ୍ରଷ୍ଟ ସାଗରସନ୍ତତି
ଲଭିଣ ମୁକତି
ଉଠିଲେକ ଭସ୍ମ-ଅଚ୍ଛାଦନ୍ତୁଁ
ସର୍ବେ ମହା ଓ୍ୱଜ୍ଜ୍ୱଳ ତନୁ ।
ଅବା ଯଥା ଭୂଚମ୍ପକ କୁସୁମ ସୁନ୍ଦର
ଝାଉଁଳି ପଡ଼ଇ ଯେବେ କାଳେ
ଝଡ଼ ପଡ଼ଇ ପାଖୁଡ଼ା, ଝଡ଼ଇ କେଶର
ତହୁଁ ସେ ମଜନ ଅପମାନେ
ଲୁଚି ରହେ ଧରା ଅନ୍ତରାଳେ
କ୍ଷଣିକ ମରଣେ
ସଂଗୋପନେ
ସେ ଅବଗୁଣ୍ଠନେ ।
ପୁଣି ଯେବେ ଆସେ ବର୍ଷା ଜୀବନଦାୟିନୀ
ତାଳେ ସଞ୍ଜୀବନୀ
ଧରଣୀ ଉରସେ ଖେଳେ ଜୀବନପ୍ରବାହ
ଉପଶମି ନିଦାଘର ଭୀମ ଦାବଦାହ ।
ସେ ସୁଧା ସିଞ୍ଚନେ
ପୁଣି ସରସ ଶ୍ୟାମଳ ସ୍ନିଗ୍ଧ କୋମଳତା
ଲଭେ ତରୁଲତା
ସାନନ୍ଦ ସରାଗେ ଶ୍ୟାମ ସୁଷମାଭୂଷଣେ
ଫୁଲ୍ଲମନେ ।

ପରଶି ସେ ସଞ୍ଜୀବନୀ ଧାର ସୁଧାମୟୀ
ମୃତ-ଭୂଚମ୍ପକ ପୁଣି ବଢ଼ଣି ଉଠଇ;
ନାଃଶୂନ୍ୟ ସେ ମୃତ୍ତିକାବକ୍ଷରୁ
ଅଙ୍କୁର ଉଠଇ ମଞ୍ଜୁ କୁସୁମିତ ତରୁ ।
(ତହୁଁ) ନବ ଜୀବନ ଆରମ୍ଭେ
ଅବସାଦ ଶିଳାବକ୍ଷୁଁ ଫିଙ୍ଗି ଉଜ୍ଜୀବନେ
ଜାଗିଉଠେ ଦମ୍ଭେ
ମରଣର ଆବରଣ ଭେଦ ଫୁଲ୍ଲ ମନେ
ପିଇ ନବ ଜୀବନର ଯୌବନମଦରସ ।
ମାତ ଉଠେ ଅଭିନବ ଲାବଣ୍ୟ ବିକାଶେ
ମହୋଲ୍ଲାସେ
ପୁଷ୍ପବତୀ ସୌନ୍ଦର୍ଯ୍ୟେ ଅଧୀର
ତହୁଁ ତାହାର ସେ
ଅମ୍ବରତରଣି
କି ମନୋରଞ୍ଜନ ।
ସୌନ୍ଦର୍ଯ୍ୟସୌରଭେ ସ୍ନେହେ ସହସ୍ର ଧାରରେ
ଢାଳିଦଏ ଅପଣାକୁ ଅତି ଅକୁଣ୍ଠିତେ
ମହାପ୍ରୀତେ
ମଜ୍ଜି ଅନ୍ତ-ବସ୍ତୁତର ପ୍ରେମ-ପାରାବାରେ
ହୋଇଯାଏ ଅମ୍ବର
ଏହାହିଁ ତ ମୃତ୍ୟୁହୀନ ଜୀବନର ଧାର ।
ତଥା ତଥା ସୁନ୍ଦର ଗୋ ତବ ରୂପରାଜ
ଦେଖ ଗୋ କେମନ୍ତ ସାଜ
ଅଭିନବ ଲାବଣ୍ୟବିଭବେ

ଉଠିଛୁ ବସନ୍ତ

ଅଜ

ରୂପହୀନ ଚିରନ୍ତନୀ ସୁଷମା ଉତ୍ସବେ ।
ଦେହସଙ୍ଗେ ପଡ଼ ଅଛୁ ଝଡ଼
ଅନଚ୍ଛ ଯା କିଛି ଥିଲା ମର କଳେବରେ
ଯାଇଥାନ୍ତା ନଛୁବା ଗୋ ଦହୁଁ ଦହୁଁ ସଢ଼ି
ପ୍ରପଞ୍ଚର ତାପ ପରଶରେ ।
କଳୁଷ-କାଳିମା
ଲଙ୍ଘି ସୀମା
ଘୋଟିଯାଇଥାନ୍ତା ତବ ଅନ୍ତରେ ଅନ୍ତରେ ।
ଅମ୍ଭାର ସ୍ୱର୍ଗୀୟ ଶୋଭା
ମନୋଲୋଭା
ମଳିନାଭ ହୋଇଥାନ୍ତା ସେ ରୂପ ପରଶେ ।
ଭାଗ୍ୟେ ଶୁଭଶଙ୍ଖ-ନାଦେ
ଅସିଣ ମରଣ
ବରେଣ୍ୟ ସେ
ବରାଭୟ କର ବିତରଣ
ପଶିଲା ଅବାଧେ
ଜୟଭେରୀ ନାଦେ ।
ତାର ସେ ମଙ୍ଗଳମୟ ମୃଦୁ ପରଶନେ
କଳୁଷ-କାଳିମା-ପଙ୍କ ଧୋଇଗଲା ଖରେ,
ଅନ୍ତରେ ଅନ୍ତରେ
ଫିଟିଗଲା ନିତ୍ୟସିଦ୍ଧ ସୌନ୍ଦର୍ଯ୍ୟ ଝରଣା
ଉଜ୍ଜ୍ୱଳ-ବରଣା

ଫିଟେ ଯଥା ଅତସୀର ମୁଗ୍ଧ ହେମଛଟା
ସରସ ପରଶମଣି ସ୍ନିଗ୍ଧ ପରଶନେ;
ଅବା ଯଥା
ବିଲୋଳ ତରଙ୍ଗେ
ପାଷାଣୀର ଅଙ୍ଗେ ଅଙ୍ଗ
ଖେଳିଗଲା ବିଦ୍ୟୁଲ୍ଲତାଗଞ୍ଜୀ ହେମଛଟା
ରଘୁମଣିଙ୍କ ଚରଣ-ମଣି ପରଶନେ
(ପ୍ରଚ୍ଛନ୍ନ ଥା
ଥିଲା ସଂଗୋପନେ
ପାଷାଣର ଅଭ୍ୟନ୍ତରେ ସ୍ଥୂଳ ଅବରଣେ ) ।
ତଥା ତବ ମର କଳେବରୁଁ
ବିକଶି ଉଠିଛୁ ଅଚମ୍ବିତେ
ସତେ ଯେହ୍ନେ ଇଙ୍ଗିତେ ବା କା'ର
ମଧୁମୟ ସୌନ୍ଦର୍ଯ୍ୟର ସୁର-କଳ୍ପତରୁ
ରୂପହୀନ ସୁଷମାର
ଅପରୂପ ବେଶେ ।
ସୁରଭି କୁସୁମ ପୁଞ୍ଜେ ପୁଞ୍ଜେ
ଫୁଟିଛି ସେ ତରୁ ଅଙ୍ଗେ ଅଙ୍ଗେ
ଯେସନ ନିକୁଞ୍ଜେ
ଫୁଟଇ ବିବିଧ ପୁଷ୍ପ ବସନ୍ତ ତରଙ୍ଗେ
କାନନ ପ୍ରଦେଶେ ।
ଫିଟିଛି ଆନନ୍ଦଧାରା ତରୁବରଚ୍ଛାୟେ
ସୁରଧୁନୀ ପ୍ରାୟେ

ପାରିଜାତ କୁଞ୍ଜ ତଳ ଶୀକରଶୀତଳ
ବହେ କଳକଳ ବୀଚିଭଙ୍ଗେ
ଦୂର ଅବସାଦ ଗ୍ଲାନି ନିଖିଳ ଜନର
ବହେ ସଦା ଆନନ୍ଦର ଶାଶ୍ୱତ ତରଙ୍ଗେ
ଜନ ମନୋହର
ଶାନ୍ତିସୁଧା ଝରିପଡ଼େ ଅଜସ୍ର ଝରଣେ
ରସିକଜନର ରସ-ପିପାସା ନିବାରି
ଶାନ୍ତିବାରି
ଶମଇ ସଂସାରଜ୍ୱାଳା କଣିକା-ସେଚନେ ।
ସ୍ୱର୍ଗୀୟ ସୌରଭ ବହି
ବହେ ଗନ୍ଧବହ
ଅହରହ
ସେ ସୌରଭ ଲୋଭେ ମୁଗ୍ଧ କଳପନା ମୋର
ତବ ଏ ନିତ୍ୟ ବସନ୍ତ କୁଞ୍ଜେ କୁଞ୍ଜେ ରହି
ମାଧୁରୀ ସେବଇ
ଆନନ୍ଦେ ବିଭୋର ।
ମିଶି ନାହିଁ ମାଟିରେ ଗୋ ସେ ରୂପବିଭବ
ଧୂଳିସାତ ହୋଇ ନାହିଁ ସେ ତନୁ ତନିମା
ମୃତ୍ୟୁ କି ତାହାକୁ କରି ପାରେ ପରାଭବ
ଅମର ଜଗତେ ଯା'ର ଜୀବନର ସୀମା
ଯା ମହିମା
ଲଳିତ କଳାମଞ୍ଜରୀ ମଞ୍ଜୁ ବୀଣା ଧରି
ଅଦ୍ୟାପି ଗାବନ୍ତି ସୁଖେ ଶାଶ୍ୱତ ସଙ୍ଗୀତେ
ନାହିଁ ନାହିଁ
ତାର ମୃତ୍ୟୁ ନାହିଁ ।

ସେ ଯେ ଅଜ୍ଞ ରୂପରାଜ୍ୟ ସୀମା ଲଙ୍ଘି ସତେ
ବିଲୋଲ କଟାକ୍ଷ ମାରି
ଦ୍ରୁତ ଅଙ୍ଗଠାରେ
କେଉଁ ସୁଦୂର ରାଜ୍ୟର ବାରତା ପ୍ରଚୁର
ଭ୍ରମେ ମନୋରଥେ
ରୂପହୀନ ସୁଷମାର ଅମ୍ବା ପତାକାରେ ।
ଅନ୍ତର ସୌନ୍ଦର୍ଯ୍ୟ ସେତ ଅନନ୍ତ ବିହାରୀ
କହେ ଅନନ୍ତର କଥା
ଅନ୍ତରେ ସଞ୍ଚରି ।
ସର୍ବଥା
ସେ ମୃତ୍ୟୁଞ୍ଜୟ ଲାବଣ୍ୟବିଳାସୀ ।
ପ୍ରେମ-ସୁଧାରସେ ପୁଷ୍ଟ ଉପମା ତାହାର
ସେ ଯେ ପ୍ରେମାଧାର
ଚିରଞ୍ଜୀବ, ଚିରନ୍ତନ, ଚିର ଅବିନାଶୀ !
ଲୋକଚକ୍ଷୁ ଅନ୍ତରାଳେ
ଅଶରୀରୀ ସେ ସୁରସୁଷମା
କରେ କେଳି କାଳେ କାଳେ
ଶାଶ୍ୱତୀ ପରମା
ଅତି ମନୋରମା
ତାହାର କ୍ଷଣିକ ଜ୍ୟୋତି-କ୍ଷୀଣାଭାସ ମାତ୍ର..
ବିଳସି ଏ ହୀର ନୀଳା-ମାଣିକ୍ୟ ସମ୍ଭାରେ
ସୌଦାମିନୀ ଝଟକ ପ୍ରଭାରେ
ଖେଳିଯାଏ କକ୍ଷେ କକ୍ଷେ
ଶିଳାପୁଞ୍ଜ ବକ୍ଷେ

ଅହୋରାତ୍ର

ଡେଣୁଟି ହୋଇଛୁ ଏହା ଏଡ଼େ ଶୋଭାବନ
ସୁଷମା ସଦନ,
ଦର୍ଶନ ମାତ୍ରେ ଯାର ଅପୂର୍ବ ମାଧୁରୀ
କରେ ଚିତ୍ତ ଚୋର ।
ଲଗାଇ କି ପ୍ରେମଡୋର
ପଶିଣ ଗୋପନତମ ଅନ୍ତର ପ୍ରଦେଶେ
ହୃଦୟକୁ ଆକର୍ଷଣ କରି ଧୀରେ ଧୀରେ
ଘେନିଯାଏ ଅନାମୟ ଦେଶେ
ପ୍ରଚଣ୍ଡ ପଲ୍ଲଲ ପାରେ ମହାସିନ୍ଧୁତୀରେ
ଢାଳିଦିଏ କି ସୁଧା ଗୋ କି ସୌରଭଧାର,
ବାନ୍ଧିଦିଏ ପ୍ରାଣେ ପ୍ରାଣେ ମରମେ ମରମେ
କରିଦିଏ ଅସ୍ୱହରା, କରି ମାତୋୟାରା ।
ଏମନ୍ତ ଗୋ ନ ଭାବ ଭରମେ
(ଏହୁ) ହୀର ନୀଳା ମଣି ମୁକ୍ତା ରତନସମ୍ଭାର
ସ୍ଥିର
ମୃତକାବିକାର
ସୌନ୍ଦର୍ଯ୍ୟେ ସତେ ଏମନ୍ତେ ଜନମନ ରମେ
କରେ ଏମନ୍ତ ଜଙ୍ଗିଲ ହୃଦୟ ହରଣ
ଅନୁକ୍ଷଣ ।
ନ ଯାଏ ପରତେ ମନେ ।
ହୃଦୟକୁ ଆକର୍ଷଣ କରଇ ହୃଦୟ
ଆତ୍ମା ଲୋଡ଼େ ଆତ୍ମାର ପରଶ

ପ୍ରାଣ ସହ ହୁଏ ସିନା ପ୍ରାଣ ବିନିମୟ
ମଧୁମୟ
ଗୋପନ ରହସ୍ୟ ।
ହୃଦୟକୁ କରେ ଯେ ଚଞ୍ଚଳ
ସେ କେବଳ
ହୃଦୟର ଅନାଦି ଅନନ୍ତ
ମଧୁମୟ ସୁଚିର ବସନ୍ତ
ଅକ୍ଷୟ ଅବ୍ୟୟ ଯାର ସୌନ୍ଦର୍ଯ୍ୟ ମାଧୁର୍ଯ୍ୟ
ଅଲକ୍ଷିତେ ପଶି ହୃଦେ ଭରେ ଅନ୍ତସ୍ଥଳ ।
ହୃଦୟ ଗୋ ଉଠେ ପୂରି
ସେ ସୁଧା ପରଶେ
ପରମ ହରଷେ ।
ଅନାମୟ ଜଗତର ଶାଶ୍ୱତ ସୁଷମା
ଖେଳିଯାଏ ଅଜ୍ଞା ମୋର ପ୍ରାଣେ
ତବ ସରସ ହୃଦର ପ୍ରେମ ନିମନ୍ତ୍ରଣେ ।
ତବ ଅମ୍ୱାର ପରଶ କେଡ଼େ ସରସ ମା
କେଡ଼େ ସୁଶୀତଳ ଶାନ୍ତିମୟ
ହରିନିଏ ଶ୍ରାନ୍ତକ୍ଳାନ୍ତ ଦୁଷ୍ଟ ଚିନ୍ତାନିଚୟ
ଜୟ ଜୟ
ବିଶ୍ୱମନୋରମା
ଜୟ ଜୟ ସମ୍ରାଟ ମହିଷୀ
ଜୟ ମାଗୋ ଭାରତ-ଈଶ୍ୱରି !

ତବ ରୂପ ଲାବଣ୍ୟ-ମାଧୁରୀ
ମାଟି ସଙ୍ଗେ ଯାଇ ନାହିଁ ମିଶି
ଧରିଛି ଏ ମନୋହର ମୂରତି ପରମା ।
ଦେହେ ପ୍ରାଣସମା
ପାଷାଣର ମର୍ମେ ମର୍ମେ ରହିଅଛି ଭରି
ଧନ୍ୟ ଧନ୍ୟ ବିଶ୍ୱମନୋରମା,
ଧନ୍ୟ ଧନ୍ୟ ସମ୍ରାଟ ହୃଦୟ
ଧନ୍ୟ ତବ ଦାମ୍ପତ୍ୟ ପ୍ରଣୟ;
ସେ ଅନନ୍ତ ସୌନ୍ଦର୍ଯ୍ୟର ରୂପହୀନ ଛବି
କେମନ୍ତେ ହେ କବି
ଇଚ୍ଛିଲ ବା ବାନ୍ଧିବାକୁ ସୀମାର ବନ୍ଧନେ
କେଉଁ ଆବାହନେ
ଅନନ୍ତକୁ ଅବତୀର୍ଣ୍ଣ କରାଇଲ ଭବେ ?
ପ୍ରେମ ପକ୍ଷେ ସକଳ ସମ୍ଭବେ
ଧନ୍ୟ ତବ ପ୍ରେମ ନୃପମଣି
ଧନ୍ୟ ରାଜରାଣି !
ଧନ୍ୟ ତୁମ୍ଭେ ପ୍ରେମିକାରତନ,
ଧନ୍ୟ ନୃପ ଭାରତମଣ୍ଡନ ।

---

# ପରିଣତି

ହିମାଚ୍ଛନ୍ନ ଶିଖରୀର ଶିରୋମଣିରୂପୀ
ଗଉରୀଶଙ୍କର ଶୃଙ୍ଗବର
ନୀହାର-ହୀରକ-ଦୀପ୍ତ ମୁକୁଟ ମସ୍ତକେ
ନଭଶ୍ଚୁମ୍ବୀ ଚୂଡ଼ା ମନୋହର ।
ତହିଁ ତପନମଣିଙ୍କର ପ୍ରଖର କିରଣେ
ବିଗଳିତ ହୁଅନ୍ତେ ନୀହାର
ଫିଟିଲା ସହସା ଶୈଳଶୃଙ୍ଗଦେଶ ଭେଦି
ସ୍ୱଚ୍ଛନୀର ସ୍ଫଟିକର ଧାର ।
ଗଳିତ ନୀହାରମୁକ୍ତ ସେ ଶିଖରଦେଶେ
ଦେଖା ଦେଲା ଅଙ୍କୁର ନବୀନ
ରବି-ରଶ୍ମି ସ୍ପର୍ଶେ ତନୁ ପୁଲକେ କମ୍ପିତ
ସବିସ୍ମୟେ ଉଭା ଉନ୍ମୁଖୀନ ।
କୃତାଞ୍ଜଳିପୁଟେ କି ସେ ଭାସ୍କରେ ଅନାଇ
କୃତଜ୍ଞତା କରଇ ଜ୍ଞାପନ
ଛେଦିଲେ ମାର୍ତ୍ତଣ୍ଡ ଯେଣୁ ଚଣ୍ଡରଶ୍ମିଜାଲେ
ନିଦାରୁଣ ତୁଷାର ବନ୍ଧନ ।
ଉଦ୍ଧରି ତାମସଗର୍ଭୁଁ ସଞ୍ଚାରିଲେ ନବ
ଜୀବନ ତା ଶ୍ରୀଅଙ୍ଗଲତାରେ
ଗୁପ୍ତକକ୍ଷେ ଲୁପ୍ତବତ ସୁପ୍ତ ଥିଲା ସେ ଯେ
ଉଭା ଆଜି ବିଶ୍ୱ-ରାଜଦ୍ୱାରେ ।

ବିଶାଳ ଜୀବଜଗତେ ପୂର୍ଣ୍ଣ ଅଧିକାରେ
ଆସୀନ ସେ ସମ ଯୋଗ୍ୟାସନେ
ମହିମାମଣ୍ଡିତ ଅଙ୍ଗେ ସାଫଲ୍ୟର ଦୀପ୍ତି
ଝଲକଇ ପ୍ରଫୁଲ୍ଲ ବଦନେ ।
କଠିନ ଦୁର୍ଭେଦ୍ୟ ଗୁରୁ ପାଷାଣର ଭାର
ଯୁଗଯୁଗାନ୍ତର ବକ୍ଷେ ବହି
ସେ ଅମର ବୀଜ ରହିଥିଲା ବା କି ଦୁଃଖେ
କି ଦାରୁଣ ବ୍ୟଥା ପ୍ରାଣେ ସହି ।
ବ୍ୟାକୁଳ ବେଦନା ତାର ନ ଶୁଣି ଭୂଧର
ଏତେକାଳ ଥିଲା ତ ବଧିର
ନିର୍ମମ କଠିନ ହୃଦୟ ସହଜେ ଗଳିଲ
ପାଷାଣେ ତ ଗଠିତ ଶରୀର ।
ଆଜି ତାର ନବ ଜନ୍ମ, ନବ କଳେବର,
ଲଭି କାରାବନ୍ଧନୁଁ ମୁକତି
ଖେଳେ ତାର ଅଙ୍ଗେ ନବ ଉତ୍ସାହ-ତରଙ୍ଗ
ନବ ପ୍ରାଣ ନବୀନ ଶକତି ।
ମୁକ୍ତବାୟୁ ସେବି ସ୍ନେହେ ବଢ଼ିଲା ଅଙ୍କୁର
ଶଶିକଳା ପ୍ରାୟେ ଦିନେ ଦିନେ
ସେବି ସୁଖକର ରବିକିରଣ ମଙ୍ଗଳ
ଶୀତାତପେ ନ ଡରି ତୁହିନେ
ଧରିଲା ଶାଖା ପଲ୍ଲବ ମଞ୍ଜରୀ ମଞ୍ଜୁଳ
ପ୍ରସୂନ କୁସୁମ ଯଥାକାଳେ
ସାଧନାର ସିଦ୍ଧି ରୂପେ ଫଳିଲା ସେ ବୃକ୍ଷେ
ଅଗଣିତ ଫଳ ଡାଳେ ଡାଳେ ।

ମରକତ-ମଞ୍ଜୁ ଫଳ କ୍ରମେ ପକ୍ୱତାରେ,
　　ଧରନ୍ତେଣି ପଦ୍ମରାଗ ଶୋଭା,
ଇନ୍ଦ୍ରନୀଳନିନ୍ଦୀ ପତ୍ର ମଞ୍ଜରୀ ଭୂଷଣେ
　　ବୃକ୍ଷଗୁଚ୍ଛ ହେଲା ମନୋଲୋଭା ।
ପୁଷ୍ଟଳ ପକ୍ୱତା ଲଭି ନିର୍ଦ୍ଦିଷ୍ଟ ସମୟେ
　　ମଧୁରସ ସମ୍ଭାରେ ତନୁ ଭରି
ଝଡ଼ିଲାକ ଫଳ କ୍ରମେ ନିସର୍ଗ ନିୟମେ
　　ଗୋଟି ଗୋଟି ଶୈଳସାନୁ ପରି ।
ଥିଲେ ତହିଁ ଯତି ଏକ ଅଜନ୍ମ ତପସ୍ୱୀ
　　ଊର୍ଦ୍ଧ୍ୱରେତା ଯୋଗୀନ୍ଦ୍ରସତ୍ତମ
ଥିଲା ତାଙ୍କ ଦୁଗ୍ଧବତୀ କାମଧେନୁ ଏକ
　　ଉଜ୍ଜ୍ୱଳା ସେ ପବନ ଅଶ୍ରମ ।
ବନେ ବନେ ଭ୍ରମି ଧେନୁ ଧନ୍ୟ ହେଲା ଧନେ
　　ସେ ମଧୁରଫଳ ଆସ୍ୱାଦନେ,
ସେଦିନୁ ସେ ଅନ୍ୟ କିଛି ନ କରି ଭକ୍ଷଣ
　　ଭ୍ରମେ ସଦା ତାର ଅନ୍ୱେଷଣେ ।
ସେ ଫଳ ଭକ୍ଷଣ ଦିନୁଁ ଦୁଗ୍ଧର ମାଧୁରୀ
　　ଦିନୁଁ ଦିନୁଁ ବଢ଼େ କ୍ରମେ କ୍ରମେ
ସଙ୍ଗେ ସଙ୍ଗେ ତପସ୍ୱୀଙ୍କ ବଢ଼େ ବ୍ରହ୍ମତେଜ
　　ହୃଦେ ପ୍ରେମ ଭକତି ବର୍ଦ୍ଧନେ ।
ଏହିମତେ କତିପୟ ସମ୍ବତ୍ସର ଅନ୍ତେ
　　ତପସ୍ୱୀଙ୍କ ସଫଳ ତପସ୍ୟା
ସନାତନ ସାର ସତ୍ୟ ଉପଲବ୍ଧି ପ୍ରାଣେ
　　ପୂର୍ଣ୍ଣ କଲେ ଜୀବନସମସ୍ୟା ।

ଶାଶ୍ୱତ ପ୍ରେମସିନ୍ଧୁରେ ନିମଜ୍ଜିଣ ଧୀରେ
ବିସର୍ଜିଲେ ଭଙ୍ଗୁର ଶରୀର
ବ୍ରହ୍ମରନ୍ଧ୍ର ଭେଦ ଜ୍ୟୋତିପ୍ରବାହ ଉଠିଲା
ତେଜେ ନିନ୍ଦି ସହସ୍ର ମିହିର ।
ଭୂମାନନ୍ଦ ମହାସିନ୍ଧୁ ଅଖଣ୍ଡ-ଉରସେ
ଲଭେ ଲୀନ ହୋଇ ତେଜୋରାଶି
ଅଜ ସେ ବୀଜର ଉଗ୍ର ଜୀବନସାଧନା
ସର୍ବସିଦ୍ଧି ଲଭିଲାକ ଆସି ।

୨

ତଥା ଦୂର ସାହାରାର ହାହାକାରପୂର୍ଣ୍ଣ
ବିସ୍ତୀର୍ଣ୍ଣ ବାଲୁକାମୟ ବକ୍ଷେ
ପଡ଼ିଥିବା ଖର୍ଜ୍ଜୁରବୃକ୍ଷ ଯତନେ ପ୍ରକୃତି
ସଞ୍ଚି ରଖେ ନିଜ ଗୁପ୍ତକକ୍ଷେ ।
ତହିଁ ସେ ବିଶ୍ୱପିତାଙ୍କ ସାକ୍ଷାତ-କରୁଣା
ମୂର୍ତ୍ତିମତୀ ବୃଷ୍ଟିଧାରା ଆସେ
ଦିନୁଁ ଦିନ ବର୍ଷୁଁ ବର୍ଷେ ରହେ ପ୍ରତୀକ୍ଷାରେ
ଯୁଗ ଯୁଗାନ୍ତର ମରୁବାସେ ।
ଆସଇ ମାହେନ୍ଦ୍ରଯୋଗ ବରଷଇ ଧାରା
ସୁଶୀତଳ ଜୀବନଦାୟିନୀ
ନୈରାଶ୍ୟ ସ୍ୱପନଭଙ୍ଗେ ହୁଏ ଉଦ୍ବୋଧିତ
ସେ କଣିକା ଅମରନନ୍ଦିନୀ ।
ଦୂରେ ଫିଙ୍ଗି ଅବସାଦ ଆଲସ୍ୟ ଜଡ଼ତା
ମହାନନ୍ଦେ ସ୍ଫୀତ ବକ୍ଷୋଦେଶ

ଫଟାଇ ପାଷାଣ କାରାଭିତ୍ତି ସୁକଠିନ
ହୁଏ ନବ ଅଙ୍କୁର ଉନ୍ମେଷ ।
ପତ୍ର ପୁଷ୍ପ ଗୁଚ୍ଛେ ପକ୍ୱଫଳର ସ୍ତବକେ
କ୍ରମେ କ୍ରମେ ତା ଶ୍ରୀବୃଦ୍ଧି ବିଶେଷ
ସମ୍ପୂର୍ଣ୍ଣ ସମୃଦ୍ଧିଶ୍ରୀରେ ହୁଅନ୍ତେ ମଣ୍ଡିତ
ଜାଗେ ପ୍ରାଣେ ସୁଦର୍ବା ଅଗ୍ରହ ।
ସୁପକ୍ୱ ସରସ ଫଳେ ସାଜି ନଇବେଦ୍ୟ
ରସଜ୍ଞେ କରେ ନିମନ୍ତ୍ରଣ
ତା ପ୍ରେମର ଆବାହନେ ନୈସର୍ଗିକ ହର
ସାଦରେ ତା କରନ୍ତି ଗ୍ରହଣ ।
ଉଠେ ତାହା ଜଳ ସ୍ଥଳ ଅନିଳ ଅନଳ
ବ୍ୟୋମ ସପ୍ତଲୋକ ଅତିକ୍ରମି
ଅନ୍ତେ ପଦପ୍ରାନ୍ତେ ସ୍ଥାନ ଦିଅନ୍ତି ତାକୁ
କୃପାମୟ ବ୍ରହ୍ମାଣ୍ଡର ସ୍ୱାମୀ ।
କେତେ ବା ସେ ବୃକ୍ଷଫଳ ପଡ଼ି ଫଟି ସଡ଼ି
ନଷ୍ଟ ହୁଏ ଦୁର୍ଗମ ଅରଣ୍ୟେ
ନିରର୍ଥକ ନୁହେଁ ତାଙ୍କ ଜୀବନ ଧାରଣ
ଏ କ୍ଷଣିକ ଧ୍ୱଂସ ଆବରଣେ;
ଲୋକନେତ୍ର-ଅନ୍ତରାଳେ ନୀରବେ ନିଭୃତେ
ଦୟାମୟ ବିଶ୍ୱରାଜଙ୍କର
ନିଗୂଢ଼ ରହସ୍ୟମୟ ଉଦ୍ଦେଶ୍ୟ ମହାନ
ସାଧିତ ହୁଅଇ ନିରନ୍ତର ।
ଯେ ଫୁଲ ନ ଫୁଟି ଝଡ଼ି ପଡ଼ଇ ଅକାଳେ
ଯେ ଫଳ ନ ପାଚି ହୁଏ ନଷ୍ଟ

ଅଲଂଘ୍ୟ ନିୟମେ ସର୍ବେ ସାଧୁଛନ୍ତି ଏକ
ବିଶ୍ୱବ୍ୟାପୀ ଉଦ୍ଦେଶ୍ୟ ଗରିଷ୍ଠ ।
ପଞ୍ଚଭୂତେ ଗଢ଼ା ଦେହ ପଞ୍ଚଭୂତେ ମିଶି
ନଷ୍ଟବତ ହେଲେହେଁ ପ୍ରତୀତ
ପରିଣତ ହୋଇ ନବ ରୂପ-ରସ-ଗନ୍ଧେ
ଅନ୍ୟ ଜୀବେ କରେ ସଂପୋଷିତ ।
ପରିହାର କରେ ଯାହା ନର, ତାହା ଅନ୍ୟେ
ସମାଦରେ କରନ୍ତି ଗ୍ରହଣ
ଗଳିତ ପଳିତ ଫଳ ପୂର୍ତି ଗନ୍ଧମୟ
ସୁଖେ କୃମି କରଇ ଭକ୍ଷଣ ।
ଏମନ୍ତେ କରାଳ କାଳଚକ୍ରେ ଘୂରି ଘୂରି
କ୍ରମେ ତାହା ହୁଏ ପରିଣତ,
ମାନବର ମେଧାରୂପେ, ପୁଣି ଜ୍ଞାନରୂପେ,
ଶେଷେ ପ୍ରେମରୂପେ ପ୍ରତିଷ୍ଠିତ ।
ଏମନ୍ତେ ଅଶେଷ ଜୀବ ଉନ୍ନତପଥରେ
ମିଳେ ଯାଇଁ ଚିନ୍ମୟ ଜଗତେ
ପରିପୂର୍ଣ୍ଣ ପରିଣତି ଲଭଇ ଅନ୍ତିମେ
ଭସି ଭାସି ଜୀବନ-ସୋତରେ ।
ଏମନ୍ତେ ଅନନ୍ତ କୋଟି ବ୍ରହ୍ମାଣ୍ଡ ମଧ୍ୟରେ
ଯେ ଯହିଁ ଅଛଇ ଭବପୁରେ
ଅଣୁ ପରମାଣୁ ରେଣୁ ତୃଣ ଲତା ତରୁ
ଜୀବ ଜନ୍ତୁ ଯକ୍ଷ ରକ୍ଷ ସୁରେ ।
ସର୍ବେ ଯଥାକାଳେ ନିଜ ନିଜ କର୍ମ ଭୋଗେ
ନିୟତିର ଅଲଙ୍ଘ୍ୟ ବିଧାନେ

ଦୂର ପରବାସୀସମ ରହି ପାନ୍ଥାବାସେ
 ବାହୁଡ଼ିବେ ସକଳେ ସ୍ୱଧାମେ ।
ତେବେ କପାଁ ମୃତ୍ୟୁନାମେ କମ୍ପିଉଠେ ପ୍ରାଣ
 ଛନକା ପଶଇ ହୃଦୟରେ
ମୃତ୍ୟୁ ତ ବାହୁଡ଼ା ବେଳେ ଖୋଲି ସ୍ୱର୍ଗଦ୍ୱାର
 ଘେନିଯାଏ ବରେଣ୍ୟ-ପଥରେ ।
ନବ ନବ ଜୀବନର ନବ ନବ ଶିକ୍ଷା
 ଦିଏ ନବ ନବ ଅନୁଭୂତି,
ଦରଶାଇ ଜୀବନର ନବ ନବ ସ୍ତରେ
 ଅଭିନବ ବିଧାତୃ-ବିଭୂତି ।
ସୌନ୍ଦର୍ଯ୍ୟ ମଙ୍ଗଳ ସତ୍ୟ ସୁଧାସିନ୍ଧୁ ନୀରେ
 ସଦା ମହାନନ୍ଦେ ଅବଗାହି,
କୈବଲ୍ୟ ଲଭଇ ଜୀବ ଜନ୍ମଜନ୍ମାନ୍ତରେ
 କ୍ରମେ ସର୍ବ ଆକାଙ୍‌କ୍ଷା ମେଣ୍ଟାଇ ।
ତେଣୁ ମୃତ୍ୟୁ ମଙ୍ଗଳର ବରେଣ୍ୟ ମୂରତି
 ସତ୍ୟ ସିଦ୍ଧିଦାତା ଭବପୁରେ
ସେ ଶ୍ୟାମସୁନ୍ଦରରୂପ ବରି ହୃଦୟରେ
 ମୁକ୍ତିପଥେ ପାନ୍ଥ ଯେବେ ତୁ ରେ ।

---

# ଉତ୍କଳର ଶିଳ୍ପ

(ସମକେଶୀ)

ଧନ୍ୟ ଧନ୍ୟ ତବ ଶିଳ୍ପୀଗଣ ହେ
ଉତ୍କଳର ଶିଳ୍ପକୁଳ ।
ରଖିଲ ଭବେ ଯେ ବିଶଦ କୀରତି
ଖିଳ ଭାରତେ ଅତୁଳ ।
ଏ ଘୋର ଦୁର୍ଦ୍ଦିନେ ତୁମ୍ଭେ ତ ରଖିଛ
ଉତ୍କଳମାତାର ଟେକ
ଉତ୍କଳ ମାହାତ୍ମ୍ୟ-ପୋଥିରେ ତୁମ୍ଭର
ସର୍ବ ଆଦ୍ୟେ ନାମୋଲ୍ଲେଖ ।
ପ୍ରକୃତିର ସଙ୍ଗେ କଳାର ବିରୋଧ
ଭଣଇ କୋବିଦ, କବି;
ପ୍ରକୃତି ଦମନ ମାନବ କଳାର
ଲକ୍ଷ୍ୟ, କହେ ଅନୁଭବୀ
ନିକାଞ୍ଚନେ ବସି ଯହିଁ ଶିଳ୍ପିଗଣ
କରେ ପ୍ରକୃତି-ସୁନ୍ଦରୀ ।
ସୃଷ୍ଟି ଥାଉଁ ଯହିଁ ଲଙ୍ଘି ନାହିଁ କେହି
ତାର ଶକ୍ତି ମାହେଶ୍ୱରୀ,
ସେ ସର୍ବ ଅଗମ ସ୍ଥଳୀ ତେଣୁ ଏବେ
ମାନବ କଳାକୌଶଳେ
ଜନାକୀର୍ଣ୍ଣ ଜନପଦେ ପରିଣତ
ହୋଇଲେଣି କାଳବଳେ ।

ଶିଳ୍ପବଳେ ଦମି ପ୍ରକୃତିକି ନାନା,
କଳାସଉଷ୍ଠବ ରଚି
ବିବିଧ କୃତିରେ ଦେଲେଣି ମାନବେ,
ବସୁନ୍ଧରା ବକ୍ଷ ଖଚି ।
ପ୍ରକୃତିର ମହାଶ୍ମଶାନ ହେଲଣି
ଥିଲା ଯା ନନ୍ଦନବନ
ବିଜୟ୍ପତାକା ଉଡ଼ାଉଛି ତହିଁ
ମାନବ-ବନ୍ଧାଣିପଣ ।
ପ୍ରକୃତିରାଣୀଙ୍କ ସଙ୍ଗିନୀଙ୍କ ମେଳା
ମଉଳ ପଡ଼ିଛି ତହିଁ
ବିଷାଦ-କାଳିମା-ବୋଳା ନୟନରୁ
ଅଶ୍ରୁଧାରା ଯାଏ ବହି ।
ହତଶିରୀ ହୋଇ ପଡ଼ିଅଛି ତାଙ୍କ
ସୁଷମା ପସରାତକ,
ମାନବର କଳା ରଚିବାରୁ ତହିଁ
ଜୟ ହର୍ଷେ ହଳ୍ଲୀଷକ,
ପ୍ରକୃତିର ବକ୍ଷେ ନିର୍ହିଣ କଳାର
ଗୃହଭିତ ପାଷାଣର
ସହସ୍ର ଶୃଙ୍ଖଳେ ଶୃଙ୍ଖଳିତ କରି
ପ୍ରକୃତିର କଳେବର
ଯେମନ୍ତକରି ଦୀକ୍ଷା ଲଭିବା ମନାସି
ମାନବେ ପ୍ରଗତିପନ୍ଥୀ
ମହା ଅସ୍ପର୍ଦ୍ଧାରେ ପ୍ରକୃତି ଦମନ
ଅସ୍ଫାଳନେ ମାତିଛନ୍ତି ।

କାହିଁ ଅବା ଶ୍ୟାମା ପ୍ରକୃତି-ସୁନ୍ଦରୀ
ଲାଞ୍ଛନା ଗଞ୍ଜନା ସହି
ଶିଂଖଳୀରେ ପଡ଼ିଅଛି ଦାସତ୍ୱର
ଗୁରୁଭାର ବକ୍ଷେ ବହି
ଏଭଳି ବିରୋଧ ସୃଜଇ ବିଧାଣି
ଯହିଁ କଳାକାଉଶଳେ
ଅଶାନ୍ତ ଅନଳ ଜ୍ୱଳେ ଅନୁଭବୀ
ଦର୍ଶକର ମର୍ମସ୍ଥଳେ ।
କଳା ନଇପୁଣ୍ୟେ ଯେଉଁ ହର୍ଷ ହୁଏ
ହୃଦୟେ ଉଦୀୟମାନ,
ଶ୍ୟାମା ସୁନ୍ଦରୀଙ୍କ ଲାଞ୍ଛନାରେ ତାହା
ହୋଇଯାଏ ମ୍ରିୟମାଣ ।
ସୁକୁମାର ପଣେ ହେଲେହେଁ ସେ କଳା
ନିଖିଳ ଚିତ୍ତହାରିଣୀ
ଦିବ୍ୟ ଚକ୍ଷୁଷ୍ମାନ କଳାଜୀବୀଙ୍କର
ନୟନ ନେଲେହେଁ କିଣି
ଶ୍ୟାମାସୁନ୍ଦରୀଙ୍କ ସୁକରୁଣ ଛବି
ମାନବର ନିଗ୍ରହୀତ
ଦେଖି କାହା ହୃଦ ପାଷାଣ-କଠିନ
ଛଳେ ନ ହେବ ବ୍ୟଥିତ ।
ମାତର ହେ ପ୍ରିୟ ଉତ୍କଳର କଳା-
କୁଶଳ ଶିଳ୍ପିଶେଖରେ
ଏ ବିରୋଧଭାବ ବିରଜିଛ ତୁମ୍ଭେ
ଦିବ୍ୟ ଦୃଷ୍ଟି ପ୍ରଭାବରେ ।

ଧନ୍ୟ ଧନ୍ୟ ତୁମ୍ଭ ବନ୍ଧାଣିପଣ ହେ
ଧନ୍ୟ ତୁମ୍ଭ ଦିବ୍ୟ ଚକ୍ଷୁ
ଯା ବଳେ ହରିଲ ଅମର ଶିବତ୍ୱ
ସର୍ବହର କାଳବକ୍ଷୁଁ ।
ଯାମା ସୁନ୍ଦରୀଙ୍କ ସ୍ନେହମୟ କୋଳେ
ହୋଇ ଲଳିତ ପାଳିତ,
ତବ ଗୃହକଳା ତେଣୁଟି ହୋଇଛୁ
ଚିର ଜୟଶ୍ରୀମଣ୍ଡିତ ।
ପ୍ରକୃତିରାଣୀଙ୍କ ଶୋଭାବୈଭବକୁ
ସୁନ୍ଦରତର କରଣି
ତବ କଳାକୃତି ହରଇ ମାନସ
ଅଦ୍ୟାପି ଚିନା ଧୂରଣି ।
ଶ୍ୟାମା ସୁନ୍ଦରୀଙ୍କ ଶ୍ୟାମଳ ଅଞ୍ଚଳ
ବଲ୍ଲେଲ ଲୀଳାତରଙ୍ଗେ,
ତବ କଳାକୃତି ଦିଶେ ସୁଶୋଭନ
ମୋହନ ବିଳାସଭଙ୍ଗେ ।
ନାତିତୁଙ୍ଗ ଗିରି ଉତ୍ସଙ୍ଗମଣ୍ଡନ
ଉତ୍ତୁଙ୍ଗ ମନ୍ଦିର କାହିଁ
ଅନନ୍ତ ବିଜୟଗାଥା ଗାଏ ସିନ୍ଧୁ
ସଙ୍ଗତେ ସ୍ୱର ମିଳାଇ ।
ତରୁ-ଲତାକୁଞ୍ଜେ ପ୍ରକୃତି ଲକ୍ଷ୍ମୀଙ୍କ
କାହିଁ ଘନଶ୍ୟାମ ଛଟା ।
ପ୍ରତିରବେ ପୁଣ ଶୁଭଇ ଅଦୂରେ
ମାଙ୍ଗଳିକ ଶଙ୍ଖ ଘଣ୍ଟା ।

ଶ୍ୟାମା-ସୁନ୍ଦରୀଙ୍କ ଶରତ ସମ୍ଭବ
ପ୍ରଶାନ୍ତ ନୀଳିମା ପୁଞ୍ଜ
ସୁକୁମାରୀ କଳାବତୀଙ୍କ ହୋଇଛୁ
ଶୋଭନ ବିଳାସକୁଞ୍ଜ ।
କାହିଁ ବା ଦିଗନ୍ତବ୍ୟାପୀ ପ୍ରକୃତିର
ସିକତାଶଯ୍ୟା ଉଦ୍ଭାସି
ବହେ ଅମ୍ବୁଧିର ଚକ୍ରବାଳଚୁମ୍ବୀ
ପ୍ରଗାଢ଼ ନୀଳିମାରାଶି;
ଏକାନ୍ତ ବିହାରଭୂମି ପ୍ରକୃତିର
ଏ ଘୋର ନିର୍ଜ୍ଜନସ୍ଥଳୀ
ଯୋଗ୍ୟସ୍ଥଳ ଜାଣି ନିରୁପମ କଳା
ରଚିଛ ମହାକୌଶଳୀ ।
ପ୍ରକୃତିର ସଙ୍ଗେ କଳାର ନିଗୂଢ଼
ପ୍ରୀତି ନୀତି ଚିରନ୍ତନୀ
ଫୁଟି ଉଠିଅଛି ତବ ଗୃହ-
କଳା-ନୈପୁଣ୍ୟେ ବିଜ୍ଞମଣି ।
କି ସାଧନାବଳେ ଲଭିଲ ଭବେ ଏ
ଦିବ୍ୟଚକ୍ଷୁ ସାରସ୍ୱତ
ଭବଯବନିକା ଫେଇ ଦେଖିଲ ସେ
ଚିନ୍ମୟ ଧାମ ଶାଶ୍ୱତ ।
ମୋହ-ଆବରଣ ପଟଳ ଭେଦଣି
ବିଶ୍ୱେ ମହାମାୟାଙ୍କର
ଦେଖିଲ ଚିନ୍ମୟ ସେ ଧାମେ ସତ୍ୟର
ମୂରତି ଶିବ ସୁନ୍ଦର ।

ନାହିଁ ଯହିଁ ଭେଦ ନାହିଁଟି ବିରୋଧ
ନାହିଁ ବୈଷମ୍ୟ ଲେଶ
ପ୍ରକୃତ ଜଗତେ ବିଳସଇ କଳା
ମଣ୍ଡି ସେ ଶନ୍ତୁଭୂଦେଶ ।
ପ୍ରକୃତି ଗମଇ ଯେଉଁ ପଥେ କଳା
ସେହି ପଥ ଅନୁସରି
ଏକହିଁ ଗନ୍ତବ୍ୟପଥେ ଯାଉଛନ୍ତି
ଏକହିଁ ଲକ୍ଷ୍ୟୀକୁ ବରି ।
ନର୍ମସଖୀ ପ୍ରାୟେ ଏକ ଅପରେକକୁ
କରୁଛନ୍ତି ସମ୍ବର୍ଦ୍ଧନା
ଏକ ଦେବା ଏକ ସେବା ସଦା ଦୁହେଁ
ଏକହିଁ ପ୍ରେମେ ଉନ୍ମନା ।
ଏକ ହସ୍ତେ ଶୋହେ କୁସୁମ ଗୁଙ୍ଗୁଡ଼ା
ନିତାନ୍ତ ଶିଶିରେ ଧୂଆ
ମାଙ୍ଗଳିକ ଗୀତ ଗାଇ ବୁଲେ ଉଡ଼ି
ନୀଳାମ୍ବରେ ଖାଣ୍ଟି ଶୁଆ ।
ଏକ ହସ୍ତେ ଶୋଭେ ଆରତ୍ରିକ ଡାଲା,
କନକ କିରଣମାଳୀ
ଚିରସୁନ୍ଦରର ବନ୍ଦାପନା ଲାଗି
କି ଅବା ସେ ଅର୍ଦ୍ଧ୍ୟଥାଳୀ !
ଅନନ୍ତ ବିଜୟଗାଥା ଗାଇ ଦୁହେଁ
ଅନନ୍ତ ପଥର ଯାତ୍ରୀ
ଚିରସୁନ୍ଦରର ସନ୍ଧାନେ ଧାବନ୍ତି
ନିରଳସେ ଦିବାରାତ୍ରି ।

ପ୍ରେମର ଗାୟତ୍ରୀ ଜପୁଛନ୍ତି ନିତ
ଦୀକ୍ଷା ଦେଇ ପ୍ରେମମନ୍ତ୍ରେ
ଚିରସୁନ୍ଦରଙ୍କ ଗାବନ୍ତି ନିର୍ଭୀଳ
ହୃଦୟର ବୀଣାତନ୍ତ୍ରେ ।
ଖୋଜନ୍ତି ସେ ସର୍ବାଦ୍ଭୁତ-ଚମତ୍କାର-
ଲୀଳା-କଲ୍ଲୋଳ ବାରିଧି
ସ୍ଥାବର ଜଙ୍ଗମ ଆକର୍ଷଇ ଯାର
ସେ ରୂପ ଲାବଣ୍ୟନିଧି ।
ଯାର ସମ୍ମୋହନୀ, ଆକର୍ଷଣୀ ପୁଣି
ଆହ୍ଲାଦନୀ ରାଗିଣୀରେ
ଉଠଇ ମୂର୍ଚ୍ଛନା ପ୍ଲାବି ଚରାଚର
ପ୍ରୀତି-ଗୀତି-ତ୍ରିବେଣୀରେ ।

---

# ଚିନ୍ମୟୀ

୧

ଅଧ ସୃଷ୍ଟିକାନ୍ତ କୁସୁମ-ସୁନ୍ଦରୀ
ସାଜି ନବ ନବ ବେଶ ଭୂଷଣେ
ମାତିଛଇ ନିତି ନିତି ସଦା ଯାର
ଶାଶ୍ୱତ ସୁଷମା ଅନୁକରଣେ;
ଯାର ମହୋଜ୍ଜ୍ୱଳ ସୁଷମାର ଛଟା
କଣିକାଏ ମାତ୍ର ହୃଦୟେ ଲଭି
ଭାବ-ବଇଭବେ ଅପୂର୍ବ ସୁନ୍ଦର
ଅପରୂପ ସୃଷ୍ଟି କରଇ କବି ।
କେମନ୍ତ ସଖିରେ ସେ ସୁଷମାଶିରୀ
ଯାର ଛାୟା ମାତ୍ର ଅବଲମ୍ବନେ,
ମଧୁ ଆଗମନେ ମୋହନ ମାଧୁରୀ-
ଲୀଳା ବିଳସଇ ଭବଭବନେ ?

୨

ଅଧ ସୃଷ୍ଟିକାନ୍ତଁ କେତେ ମହାକବି
ମହା ମହାକାବ୍ୟ ଲେଖି ଯତନେ
ଶକ୍ତ ନୋହିଛନ୍ତି ଯା ମହାମହିମା
ମହନୀୟ ଛଟା ଅନୁକରଣେ ।
କେତେ ବା ଲଳିତ କଳା-ବିଶାରଦେ
କାରୁକାର୍ଯ୍ୟମୟ ମନ୍ଦିର ଅଙ୍ଗେ
ସେ ମାଧୁରୀ ଛଟା ପରକାଶ ଲାଗି
ସ୍ଥାପତ୍ୟ-ରଞ୍ଜନ-କଳା-ପ୍ରସଙ୍ଗେ

ନରନାରୀ କେତେ ମୂର୍ତ୍ତିଲଙ୍କାପୁରୀ
　　କେତେ କେତେ ତାଜମହଲ ରଚି
ଲାଜେ ଅଧୋମୁଖ ହୋଇଛନ୍ତି ଯାର
　　ସୁଷମାର ଛାୟା ସଙ୍ଗତେ କରୁ
କେତେ କେତେ ଷଡ଼ଦର୍ଶନ ସାଗରେ
　　ଭାସି ମହା ମହା ସମସ୍ୟାସ୍ରୋତେ
କେତେ ପୁଣି ଜ୍ଞାନବିଜ୍ଞାନର ପଥେ
　　ଭ୍ରମି ଭ୍ରମି ମହାତଥ୍ୟର ପୋତେ
ମାନବମନୀଷା ମହାଉତ୍କଣ୍ଠାରେ
　　ଧାବଇ ରଜନୀ ଦିବସ ଜାଗି
ଯାହାର ମୋହନ ସୁନ୍ଦର ଶ୍ରୀଅଙ୍ଗ
　　ଶୀତଳ ସରସ ପରଶ ଲାଗି ।

୩

ଆଦି ସୃଷ୍ଟିକାଳୁଁ ନିତି ବସୁମତୀ
　　ତ୍ରିକାଳସନ୍ଧ୍ୟାରେ ଯଥାବିଧାନେ
ପୂଜୁଛଇ ଯାର ଅମଳ ଚରଣ
　　ଧୂପ ଦୀପ ଗନ୍ଧ ପୁଷ୍ପ ପ୍ରଦାନେ ।
ନିତି ନିଶୀଥିନୀ ନୀରବ ସଙ୍ଗୀତେ
　　ବନ୍ଦିବାକୁ ଯା'ର ଗୁରୁ ଚରଣେ
ଉତ୍କଣ୍ଠାର ଦୃଷ୍ଟି ଢାଳେ ଦିବାନିଶି
　　ଅଗଣନ ଗ୍ରହ ତାରା ନୟନେ ।
ପ୍ରତ୍ୟୁଷରୁ ଉଠି ଦିବାରାଣୀ ତାର
　　କଳକୋଳାହଳମୟ ସଙ୍ଗୀତେ

ହେମୋଜ୍ଜ୍ୱଳ ପ୍ରଭାଜାଲ ବିସ୍ତାରଣ
ଉଦ୍ଧକଣ୍ଠେ ନାଚଇ ଯାହାର ପ୍ରୀତେ ।
ଶ୍ୟାମଳ ଶୋଭନ ଅଞ୍ଚଳ ଦୋଳାଇ
ଯେନ ଇନ୍ଦ୍ରନୀଳ ବରଣଡାଲା
ପ୍ରତି ବର୍ଷ ଆସି ଖୋଜଯାଏ ଯାକୁ
ସେ ଦେବ-ସୁନ୍ଦରୀ ଶତେଭବାଲା ।
ଅବିରତ ଯାର ବନ୍ଦନା ସଙ୍ଗୀତ
ଚରାଚର କଣ୍ଠୁ ପଡ଼ଇ ଝରି
ଖୋଜି ଖୋଜି ଯାକୁ କମ୍ପିତ ଧରଣୀ
ଘୂରି ବୁଲୁଛଇ ଆବର୍ତ୍ତି ପରି ।
ଘୂରେ ରବି ଶଶୀ ଘୂରେ ଗ୍ରହ ତାରା
ଘୁରଇ ସମଗ୍ର ସୌରମଣ୍ଡଳ
ସର୍ବେ ଧାଇଁ ଛନ୍ତି ଧରିବାକୁ ଯାର
ସେ ଦିବ୍ୟସୁନ୍ଦର ମୂର୍ତ୍ତି ସୁତଳ ।
କାହିଁ ରହେ ବାସେ ଅମର୍ତ୍ତ୍ୟ-ସୁନ୍ଦରୀ
କାହିଁ ଯାଏ ଚଳେ ନ ଦେଇ ଧରି
ସେ ଯେ ଏ ନିଖିଳ ବିଶ୍ୱମଥାମଣି
ଜଗତର ନେତ୍ରାନନ୍ଦ-ପସରି ।
ଆଦ୍ୟ ସୃଷ୍ଟି କାଳୁଁ ଏ ବିଶ୍ୱ ବ୍ରହ୍ମାଣ୍ଡ
ଅବିରାମେ କରୁଛନ୍ତି ଧାବନ
ଦାରୁଣ ବିରହେ ପାଗଳିନୀ ପ୍ରାୟେ
ଅସମ୍ଭାଳ କେଶ ବେଶ ଭୂଷଣ
କେତେ ହିମାଳୟ ଝରି ପଡ଼ିଲାଣି
ବିଗଳିତ ହୋଇ କରକା ପରି

କେତେ ମହାସିନ୍ଧୁ ଲଭିଲେଣି ସ୍ଫୀତି
ମହାଶୈଳୋପମ ପ୍ରତିମା ଧରି
କେତେ କେତେ ମହାନଗରୀ ହେଲଣି
ପରିଣତ ଭୀମ ମରୁପ୍ରାନ୍ତରେ
କାଳକ୍ରମେ ପୁଣି କେତେ ମରୁଭୂମି
ସମୃଦ୍ଧ ହେଲଣି ମହାନଗରେ;
କେତେ ରାଜବଂଶ ହେଲଣି ବିଲୀନ
କେତେ ପୁଣି ଉଠେ ମସ୍ତକ ଟେକି
କେତେ ରବି ହୋଇଗଲେଣି ଶୀତଳ
ସୃଷ୍ଟିପଟେ ତା କେ ରଖିଛି ଲେଖି ?
କେତେ ନିଶାମଣି ମଉଳି ଗଲେଣି
ଶୋଭାଯାତ୍ରା ଚନ୍ଦ୍ର ଉଦୟ ଭଳି
ଏ ଶୋଭାଯାତ୍ରାର ନାହିଁ ତ ବିରାମ
ଏକମୁଖେ ଯାଏ ଉଦ୍ବେଗେ ଚଳି ।
ଏକମୁଖେ ଏକଲକ୍ଷ୍ୟେ ଏକପଥେ
ଏକହିଁ ଉତ୍କଣ୍ଠା ହୃଦୟେ ଧରି
ଧାଉଁଛନ୍ତି ମନ ନୟନାଭିରାମ
ସେ ଦିବ୍ୟମୂରତି ସଦା ସୁନ୍ଦର ।
କିଏ ଯେସନ୍ତେ କେଉଁ ଦିଗଦିଗନ୍ତରୁ
ଝଟକ ବିଜୁଳି ପରାୟେ ଆସି
ମଧ୍ୟେ ମଧ୍ୟେ ନାଚିଯାଏ ଆଗେ ଆଗେ
ପ୍ରଭାକାଳେ ଚକ୍ରବାଳ ଉଦ୍ଭାସି
କ୍ଷଣେ ଦେଖା ଦେଇ ପୁଣି ଛଟକଣି
ଯାଏ ଦୂର ଘନପଟଳେ ଲୁଚି

ଶୋଭାଯାତ୍ରୀଦଳ ମାତ ନବୋନ୍ମାଦେ
ଧାବନ୍ତି ତା ପଛେ ସର୍ବ ମୁହୂର୍ତ୍ତ ।
କି ମୋହ-ମଦିରା ଅଛଇ ସଙ୍ଗୀ ରେ,
ତାର ସେ କ୍ଷଣିକ କ୍ଷୀଣ ଝଙ୍କାରେ
ଖିଳ ବିଶ୍ୱ ଯାକୁ ଓଠାବ ଢେଳଇ
ଅମୋଘ ଚୁମ୍ବକ ପରି ପରା ସେ ?



# ବାଙ୍ମୟୀ

୧

ଅଜଣା ଅତୀତର କେଉଁ ଦୂର ଦିବସେ
ଭୁବନ ଗଗନ ଥିଲା ଗୂଢ଼ ରହସ୍ୟେ ।
ନିଖିଳ ଜଳ ସ୍ଥଳ
ବ୍ୟୋମ ବାୟୁ ଅନଳ
ସରବେ ଥିଲେ ମୁଗ୍ଧ କା ଇନ୍ଦ୍ରଜାଲବଶେ,
ଥିଲେକ ମୂକ ମୌନ ଥିଲେକ ନୀରବ ସେ ।

୨

ସେ ଦିନ ଦିବାକରେ ନିରେଖି ଜ୍ୟୋତିକକ୍ଷେ
ଅବ୍ୟକ୍ତ ବେଦନା ଏ ଜାଗିଲା ସିନ୍ଧୁବକ୍ଷେ
ସେ ବେଦନେ ବ୍ୟାକୁଳି
ଉଠିଲା ଫୁଲି ଫୁଲି
ଅସହ୍ୟ ସେ ବେଦନା ହେଲାକ ତାହା ପକ୍ଷେ
କି ଗଭୀର ବେଦନା ଜାଗିଲା ସିନ୍ଧୁବକ୍ଷେ ।

୩

ଦାରୁଣ ବେଦନାରେ ହେଲା ସେ ଛଟପଟ,
କହି ନୁହେ ବଚନେ କଲବଲ ନିପଟ
ଶଯ୍ୟାକଣ୍ଟକୀ ରୋଗୀ
ପକ୍ଷାଘାତ କା ଭୋଗି
ଗଡ଼ି ବୁଲଇ ଶେଯେ ବେଦନାରେ ଉନ୍ମତ୍ତ ।
କହି ଇଚ୍ଛଇ ଦୁଃଖ କହି ନୁହେ ସମର୍ଥ ।

୪

ପଛୁଆଁ ରବିକର        ପଇଣେ ନଳନୀର
ଝରିଲା ଝରଝର        ଶିଶିର ଅଶ୍ରୁନୀର,
ଦିନେ ଏମନ୍ତ ନାହିଁ
ଅଜ ବା କାହାଁପାଇଁ
କାନ୍ଦି ଉଠଇ ପ୍ରାଣ, ହୃଦ ହୁଏ ଅଧୀର
ଭାବି ସରୋଜବାଳା     କରି ନ ପାରେ ସ୍ଥିର ।

୫

ଦୋଚହିଁ କଲା ପ୍ରାୟେ ଦିନମଣି ବଦନେ
ଚକିତେ ଚୁହିଁ ଚୁହିଁ     ଅଡ଼ ଅଡ଼ ନୟନେ,
ସରମେ ଥରି ଥରି
ମରମେ ଯାଏ ମରି
ନାହିଁଧରମ ଧରି        ରହେ ଅଧୋବଦନେ
ପରମ ବନ୍ଧୁ ପରି       ପରତେ ହୁଏ ଷଣେ ।

୬

ଏମନ୍ତେ ଦ୍ୱିଧାଭାବ      ଜାଗନ୍ତେ ଷଣେ ଷଣେ,
ଫୋକେ ସରୋଜିନୀ ଭାବଇ ମନେ ମନେ ।
କାହିଁକି ଦେଖିଛଇଁ
ଏ ମନୋହର ଛଇ
କାହିଁ କି ଦେଖିଛଇଁ     ପୂର୍ବ ପୂର୍ବ ଜନମେ
ମଧୁ ଯାମିନୀ ଶେଷେ     ଶୁଭ ମାହେନ୍ଦ୍ର ଷଣେ ।

୭

ଘାଣ୍ଟି ହେଉଛୁ ହୃଦି!    କି ଭାବ ସଞ୍ଚରଣେ
ଛନ୍ଦ ଛନ୍ଦ ମାନସ      କି ମଧୁ ପରଶନେ

ଗଣ୍ଡସ୍ଥଳୁଁ କପାଳୁଁ
ଲୋତକଧାର ବହି
ପଡ଼ଇ ଝର ଝର    ହୃଦସିନ୍ଧୁ ମଥନେ
କହି ନୁହେ ଏ ଦୁଃଖ  ସହି ନୁହେ ସହନେ ।

୮

ମନ୍ଦ ମଳୟ ମଧୁ    ସ୍ୱପନେ ଭୋଳ ହୋଇ
ଥିଲି ମଳୟ ଚିର    ଚନ୍ଦନକୁଞ୍ଜେ ଶୋଇ,
ରବିରଶ୍ମି ରଞ୍ଜନେ
ମୋହନିଦ୍ରା ଭଞ୍ଜନେ
ଉଠିଲି ଶଯ୍ୟା ତେଜି  ଚିତ୍ତେ ଉତ୍ସୁକ ହୋଇ
ମଧୁର ବୋଧନରେ   ମରମ ଜ୍ଞାତ ନୋହି ।

୯

ଚକିତେ ଚରାଚରେ  ଚାହିଁ ଚାହିଁ ବ୍ୟାକୁଳ
ଚଞ୍ଚଳ ଭାବୋର୍ମିରେ  ଚିତ୍ତସିନ୍ଧୁ ଉତ୍କୁଳ ।
କି ହେଲି କି ହେଲି ରେ,
ଏମନ୍ତ ପରକାରେ
ଧାଇଁ ଅଜସ୍ରଧାରେ   ଏ ନବ ଭାବକୁଳ
କେମନ୍ତେ କାହୁଁ ଆସି ହୃଦେ ମୋ ହେଲି ଠୁଳ ।

୧୦

ଶୟନୋପବେଶନ    ବିଷ ହେଲଣି ମୋତେ
କେ ମୋତେ ଠେଲିଦେଲା ଏ ନବରାଗ-ସ୍ରୋତେ
ମରମେ ଏ କି ପୀଡ଼ା
ରୋଧି ପିଙ୍ଗଳା ଇଡ଼ା
କେ ଯେହ୍ନେ ଶ୍ୱାସରୋଧ କରିଦଏ ଗୋ ସତେ
କା ଆଗେ କହିବିଁ ଯେ ଦୁଃଖ ହୃଦଗତେ ।

—୧୧—

କମ୍ପି ଉଠଇ ହୃଦୟ　　ଦୁରୁ ଦୁରୁ କମ୍ପନେ
ଜ୍ୱଳିଯାଏ ମରମ　　ମର୍ମ୍ମରର ଦାହନେ
　　କହି ନୁହଇ କଥା
　　ତେଣୁ ଦ୍ୱିଗୁଣ ବ୍ୟଥା
ଅନ୍ତଃସ୍ଥଳେ କୁହୁଳି ଉଠଇ କ୍ଷଣେ କ୍ଷଣେ
ସହି ନୁହଇ ଦୁଃଖ କହି ନୁହେ ବଚନେ ।

—୧୨—

ଉତ୍ତୁଙ୍ଗ ହିମାଦ୍ରିର　　ହିମମୟ ସଦନେ
ନିଦ୍ରିତା ନିର୍ଝରିଣୀ　　ଥିଲା ମୋହ-ସ୍ୱପନେ ।
　　ଅରୁଣ-କରରାଶି
　　ତୁଷାରସନ୍ଧ୍ରେ ପଶି
ଛୁଇଁଦେଲା ତା ଅଙ୍ଗ ସରାଗେ ସମ୍ମୋହନେ
ଜାଗିଲା ନିର୍ଝରିଣୀ ମୋହନ ପରଶନେ ।

—୧୩—

ଆହ୍ଲାଦେ ଟଳଟଳ　　ହୋଇ ଉଠିଲା ତନୁ
ଆଳସ୍ୟ ଜଡ଼ତାଦି　　ଅପସରିଲା ମନୁଁ ;
　　ଲଭି ନବ ଜୀବନ
　　ଚଞ୍ଚଳ ହେଲା ମନ
ହେବାକୁ ନିର୍ଗତ ସେ ହିମକାରା-ସଦନୁଁ
ନବ ଉତ୍ସାହ ଝଳା ଝଲକିଲା ବଦନୁଁ ।

—୧୪—

କାହୁଁ ଏ ଉଦବେଗ ଆସି ବା ଅଚମ୍ବିତେ
ଘାଣ୍ଟିଦେଲା ଅନ୍ତର　　ପଶିଣ ହୃଦେ ଶତେ, .

ଭେଦିଲା ହାଡ଼େ ହାଡ଼େ
ଦଜ୍ଞାର ଦାଢ଼େ ଦାଢ଼େ
ଜ୍ୱଳନ୍ତ ଜ୍ୱାଳାବଳୀ ମରମେ ଅସ୍ତ୍ରିମିତେ
ଥୟ ମୁଁ ଧରିବାକୁ ନ ପାରେ କଦାଚିତେ ।

—୧୫—

ଉଡ଼ି ଭୁଲଇ ମନ କେଉଁ ରାଇଜେ ଯାଇଁ
ଏ କାରାଗାରବାସେ ରାଜ୍ଜ ତ ଦଣ୍ଡ ନାହିଁ,
ମୁଁ ଅଟେ କୁଳନାରୀ
କୁମାରୀ ସୁକୁମାରୀ
କେ ମୋତେ ଗୃହଛଡ଼ା କରଇ ରେ ଭୁଲାଇ
କୁଳଟା କଳଙ୍କିନୀ ବୋଲାଣି ଦେବାପାଇଁ ।

—୧୬—

ପାଇବି ହଟହଟା ହେବି ଜଗତହସା
ଲୋକେ ବୋଲିବେ ଏଟା କୁଳଟା କୁଳାଂକଷା,
କୁଳ ଭବନ ଛାଡ଼ି
କାହିଁ ଦିଏ ଏ ଧାଡ଼ି
କୁଳପାଂଶୁଳା ଏ ଯେ ଅପବାଦ ପରଶା
ମୋହ କଟାଳେ ସତେ ଅଛି କି ଏ ଦୁର୍ଦ୍ଦଶା !

—୧୭—

କା ଆଗେ ଲାଜକଥା କହିବି କେମନ୍ତେ ବା
ଅନ୍ୟ ନ ଜାଣେ ବନ୍ଧୁ ଅନ୍ତରଯାମୀ ସେବା
ବନ୍ଧୁ ସେ ଅନ୍ତର୍ଯ୍ୟାମୀ
ମୋର ଜୀବନସ୍ୱାମୀ
କେ ଅଛି ଅନ୍ତରଙ୍ଗ କାହାକୁ କହିବି ବା,
ତୁଣ୍ଡେ ନ ଆସେ ଭାଷା ନ କହି ଜାଣି ଦିବା ।

—୧୮—

ଏମନ୍ତେ ହେମମୟୀ   ଭାବ ଅନ୍ତର୍ଦ୍ଦେଶେ
ଊର୍ଦ୍ଧ୍ୱେ ଉଠିଛି ଗୃହୀ ଗହ୍ୱଳ ନିର୍ନିମେଷେ
ଗୃହୁଁ ଗୃହୁଁ କ୍ରମଶଃ
ହୋଇଗଲା ବିବଶ
ହେଲକ ଝଲମଲ ମହାପ୍ରେମ ଆବେଶେ
କି ନିଶା ଝାଙ୍କିଲା ରେ ପୁଣି କି ହେବ ଶେଷେ ।

—୧୯—

ଏକାଳେ ଅନ୍ତର୍ଯାମୀ   ସର୍ବଜୀବନସ୍ୱାମୀ
ନିର୍ଖିଲ ପ୍ରକୃତିର   ମରମ କଥା ଜାଣି
ଛଟକେ ଇଚ୍ଛାମୟ
କଲେକ ଅଭ୍ୟୁଦୟ;
କଣ୍ଠତଟେ ଆସୀନା ମଞ୍ଜୁଳ ବୀଣାପାଣି
ହେଲେ ବାଙ୍ମୟୀ ହେଲା ଶୀଳପ୍ରକୃତିରାଣୀ

—୨୦—

ଝରିଲା ନିର୍ଝରିଣୀ   ହେମମୟୀ ସଦନୁଁ
ଢଳିପଡ଼ିଲା ଭାର   ପ୍ରେମେ ଗଳିତ ତନୁ
ଝରଝର ସଙ୍ଗୀତ
ଗାଇଲା ହୋଇ ପ୍ରୀତ
ଶୁଭିଲା ପ୍ରତିଧ୍ୱନି   ଲତାକୁଞ୍ଜ କାନନୁଁ
ଦୁର୍ଦ୍ଦାନ୍ତ ଭାରତକି   ଓହ୍ଲାଇଗଲା ମନୁଁ ।

—୨୧—

ରହି ପାରେ କି ଆଉ   ମଳୟ ସ୍ୱନିଳୟେ
ପ୍ରେମଦୁନ୍ଦୁଭି ବାଇ   ସାଜିଲା ଦିଗ୍‌ବିଜୟେ.

ବହର ମନ୍ଦ ମନ୍ଦ
ଶୀତ ଚନ୍ଦନଗନ୍ଧ
ବାନ୍ଧିର ଦେଲ ପ୍ରେମେ ଜୀବଜନ୍ତୁନଚଯ୍ୟେ
ସାମ ସଙ୍ଗୀତ ଗାଇ ମଧୁର ତାନ ଲୟେ ।

—୨୨—

ଥୟେ ଧର ହୃଦୟେ ଗମନ୍ତେ ଧୀର ଧୀର
ଭେଟିଲ ଯାଇ ମାର୍ଗେ ଉଆସ ନଳନୀର
ଅଳିକୁଳ ଗୁଞ୍ଜନେ
ମୁଖର ପଦ୍ମବନେ
ଗନ୍ଧାଦାନପ୍ରଦାନେ ହୋଇ ହର୍ଷେ ଅଧୀର
ମୋହିଲେ ପରସ୍ପରେ ସମ୍ପ୍ରାପ୍ତି ଗୃହଚୁ୍ୟରି ।

—୨୩—

ମଳୟ ସମାଗମେ ନୀଳସିନ୍ଧୁ ହରଷେ
କହିଦେଲ ତା ମର୍ମ- କଥାଟି ସ୍ନେହବଶେ
ତହୁଁ ମିଳ ଉଭୟେ
ପ୍ରେମୋନ୍ମତ୍ତ ହୃଦୟେ
ଗାଇଲେ ପ୍ରେମଗାଥା ନାଚ ନାଚ ରଭସେ
ତରଙ୍ଗ କରେ ସତେ ଚୁମ୍ବିବ କି ନଭସେ ।

—୨୪—

ଖେଳଗଲ ନଖିଳ ପ୍ରକୃତ ସ୍ତରେ ସ୍ତରେ
ବାଞ୍ଛାଦାକଣୀଧାର ମଧୁର ପ୍ରବାହରେ
ଗୋପନ ମନକଥା
ଦାରୁଣ ମର୍ମବ୍ୟଥା

ଏକ ଅପରେକ ପାଶେ ଭୁଷିଲେ ପରସ୍ପରେ
ଗୁରୁ ହୃଦୟଭାର ଲଘୁ ହୋଇଲା ଖରେ ।

—୨୫—

ନାଗିଲ ଚନ୍ଦ୍ରାଗ୍ରଣି ବାକ୍ୟପ୍ରବାହେ ଝର
ପରସ୍ପରର ମନ ଅଚିରେ ନେଲା ହର
ଏକେ ଅପରକେ ଚାହିଁ
ବିନା ମୂଲ୍ୟରେ କଣି
ବିସ୍ମୃତ ପୂର୍ବ କଥା ଅଲପେ ସ୍ମର ସ୍ମର
ପରସ୍ପରେ ଘେନିଲେ ସୁପରିଚିତ ପର ।

—୨୬—

ଏକ ଅପରେକ ସଙ୍ଗେ ମାତିଲେ ଆଲିଙ୍ଗନେ
ଆବଦ୍ଧ ହେଲେ ବନ୍ଧୁ—ସାଥେ ପ୍ରୀତିବନ୍ଧନେ
ସେ ବାକ୍ୟ-ମକରନ୍ଦ
ପିଇ ସର୍ବେ ଆନନ୍ଦ
ମନ୍ଦାକିନୀରେ ସ୍ନାନ କଲେ ପ୍ରସନ୍ନମନେ
ଲଭିଲା ମହାପ୍ରେମ— ଲୀଳା ଭବଭବନେ ।

———

# ପ୍ରେମମୟୀ

ଗୈରିକ

କେ ତୁହି ଗୋ ଥରେ ଥରେ
ଅସି ପ୍ରତି ଘରେ ଘରେ
ଦେଇଯାଉ କରେ କରେ ସ୍ୱରଗ-ସୁଧା,
ଗୋପନେ ଅତି ଯତନରେ
ପୁଣି ଅନ୍ତରେ ଅନ୍ତରେ
ମନମୋହନ ମନ୍ତ୍ରରେ ମୋହୁ ବସୁଧା,
ଗାଉ ଶୋକପାସୋରା ଗୀତ
ନିଖିଳ ସବଣେ ତାହା ପରମ ପ୍ରୀତ । ୧ ।
ସେ ଆତ୍ମପାସୋରା ଗୀତ—
ପ୍ରବାହେ ଗୋ ନିତ ନିତ
ନିଖିଳ ପାବନୀ ପ୍ରୀତି ଅଳକାନନ୍ଦା
ନନ୍ଦନରୁ ଝର ଝର
ଧାଏ ଭବ ଭର ଭର
ଧରଣୀ ତା ହୃଦେ ଧରି ରଖଇ ସଦା
ଯାର ମଧୁମୟ ପରଶେ
ଭୁବନ ମଗନ ସଦା ଉଜ୍ଜ୍ୱଳ ରସେ । ୨ ।
ସେ ମନଭୁଲା ରାଗିଣୀ
ଝଙ୍କାରେ ଖିଲ ମେଦନୀ—
ବକ୍ଷେ ସୁଧା ତରଙ୍ଗିଣୀ ଯାଏ ଗୋ ବହି
ସେ ମୋହନ ତାନେ ଭୁଲି
ବାରବନ୍ତ ଉଠେ ଫୁଲି
ହୃଦେ ଖେଳଇ ବିଜୁଳି ଅନଳମୟୀ

ସେ ମଦେଶ୍ ପିଇଲେ ବାରେ,
କୁଣ୍ଠିତ ନୁହଇ ଜନ ପ୍ରାଣ ଦେବାରେ । ୩ ।
କଳିକାଳ-ଭୁଜଙ୍ଗମ—
ବିଷମ-ବିଷ-ଦଶନ—
ଦଂଶନର ଉପଶମ ଅସାଧ୍ୟ ଜାଣି
କଳି-କାଳକୂଟ-ହର
ମହା ଗାରୁଡ଼ ମନ୍ତ୍ରର
ବଞ୍ଚାଇଲ କଳି ନର ଗୋଲୋକୁଁ ଆଣି,
ପ୍ରେମ-"ପଦ୍ମତୋଳା" ଉଛାର
କାଳୀୟଦମନ-ଲୀଳା ରଙ୍ଗେ ପ୍ରଚୁର । ୪ ।
ପିଇ ସେ ଅମୃତବଲ୍ଲୀ—
ରସାୟନ 'ରସାବଳୀ'
ଯେ ଯେ ପଡ଼ିଥିଲେ ଢଳି କଳିଦଂଶନେ,
ଲଭି ସେ ନବଜୀବନ
ଉଠିଲେ ହୋଇ ଚେତନ
ଶରତ୍ତ୍ରୃଷିତ ଯେସନ ସୁଧା ବର୍ଷଣେ
ନିଗୂଢ଼ ସେ ପ୍ରେମ-ମହିମା,
ତୋ ବିନୁ ଅନ କେ ଜାଣେ ତାହାର ସୀମା । ୫ ।
ତୁ ଯେଣୁ ବ୍ରଜରମଣୀ—
ଗହଣେ ପ୍ରତି ରଜନୀ
ବିପଥ ପଥ ନ ମଣି ନିଶା ତମିରେ,
ମୋହନ ମୁରଳୀ ସ୍ୱନେ
ମୁଗ୍‌ଧ ହୋଇ ଉଛାଟନେ
ଭ୍ରମିଥିଲୁ ବନେ ବନେ ଯମୁନାତୀରେ·

ବାଜଥିଲା ଯେବେ ଉଚ୍ଛ୍ୱାସେ,
ଭୁବନମୋହନ ବଂଶୀ ଏ ଉଦ୍‌ବାସେ । ୬ ।
ମା ତୋର ଲୀଳା ମାଧୁରୀ
ବ୍ରହ୍ମାଣ୍ଡ ରହିଛି ପୂରି
ସର୍ବଦା ଜୟ ମହିମା ବାଜେ ତୋ ନାମେ,
ପ୍ଲାବି ଦ୍ୱିସପ୍ତ ଭୁବନ
ନିଖିଳ ଜଡ଼ ଚେତନ
ତୋ ମାଧୁରୀ ପ୍ରସ୍ରବଣ ବହେ ଏ ଧାମେ;
ସ୍ଥାବର ଜଙ୍ଗମ ସରବେ
ଗୌରବମଣ୍ଡିତ ସିନା ତୋର ଗୌରବେ । ୭ ।
ତୋ ଗରବେ ଗରବିଣୀ
ଦେଖ ଚିର ନିର୍ଝରିଣୀ
ପ୍ରେମବିଭୋଳେ ଉନ୍ମାଦିନୀ ଧାଇଁ କେମନ୍ତେ
ଭେଟନ୍ତେ ଜୀବନ ବଧି
ଅନନ୍ତ ନୀଳ ବାରିଧି
ତନ୍ମୟ ହୁଅଇ, ସିଦ୍ଧି ଲଭି ଯେମନ୍ତେ
ସାଧକ ମଜ୍ଜଇ ହରଷେ,
ମଗ୍ନ ତଥା ତରଙ୍ଗିଣୀ, ଆନନ୍ଦରସେ । ୮ ।
ଜୀବନଶୋଷଣକାରୀ
ଜାଣିଲେହେଁ ସୁକୁମାରୀ
ନଳିନୀ ଉବେ ପ୍ରଚୁର ତୋର କୀରତ,
ସନ୍ତାପଜ୍ୱାଳା ନ ଡରି
ତପନଙ୍କୁ ପ୍ରାଣେ ବରି
ଜୀବନେ ଜୀବନ ଧରି ରହେ ବିରତ,

ପତଙ୍ଗମ ତୋ ସ୍ନେହେ ଭୁଲି
ଆପଣା ପାସୋର ପଡ଼େ ଅନଳେ ଝାସି । ୯ ।
ତୋର ମୂରତି ମୋହନ
ହୃଦୟେ କରି ବରଣ
ହେଲେ ଆତ୍ମବିସ୍ମରଣ ଭକେ ସୁଜନ,
ଜୀବନସର୍ବସ୍ୱ ତାର
ସନ୍ତରନ୍ତ ଉପହାର
ବିତରୁଁ ବିତରୁଁ ତାର ଛୁଟେ ଜୀବନ,
ତହିଁ କି ତା ନାହିଁ ଭ୍ରୂକ୍ଷେପ
ନାହିଁ ଦୁଃଖ ଲବଲେଶ; ନାହିଁ ଅକ୍ଷେପ । ୧୦ ।
କ୍ଷୀର ନୀର ଅଲିଙ୍ଗନେ
ଚୁନ-ହରିଦ୍ରା ମିଳନେ
ଲୌହ-ଚୁମ୍ବକ-ଚୁମ୍ବନେ ମା ତୋ ମହିମା
ବ୍ରହ୍ମାଣ୍ଡର ସ୍ତରେ ସ୍ତରେ
ଅଙ୍କିତ ଅମରାକ୍ଷରେ
କେ ଅବା କଳନା କରେ ତାହାର ସୀମା;
ଦେଖି ମା ତୋ ଦିଗ ଦର୍ଶନ,
ଏକମୁଖେ ଧାଏ ସଦା ତୋର ଚରଣ ।

---

# ଅରୂପରତନ

ରୂପରତ୍ନାକର ମଥି ପରମ ଯତନେ
ଅରୂପରତନ ମଣି ଲଭ ଆଶା କରି
ଭବରୂପ ମୋହକୂପେ, ପ୍ଳବନେ ମଜ୍ଜନେ
ପାତାଳ ଅଜ୍ଞାନେ କୂପମଣ୍ଡୂକ ଯେପରି ।
ରୂପସୀ ରୂପାଜୀବାର ରୂପଶ୍ରୀ ଯୌବନେ
ଦୁର୍ଲ୍ଲଭ ମାନବଜନ୍ମ ବିକ୍ରୀତ ଯାହାର
ସତତ ବଞ୍ଚିତ ସେହୁ ପ୍ରେମ ମହାଧନେ
କାମ-ନାଗପାଶେ ବଦ୍ଧ କଳନା ତାହାର !
ଶବରୀ ଶିଖରୀ ଶେଷେ ଦରୀ ଚୟନେ
ମୁକ୍ତା ଫିଙ୍ଗି କରେ ଯଥା ଗୁଞ୍ଜାରେ ଆଦର,
ଅରୂପରତନ ଲଭ ଆଶା ପୋଷି ମନେ
ରୂପେ ଭୁଲି ହେଲୁଁ ତଥା ରୂପାସ୍ତ୍ର କିଙ୍କର ।
ଯେ ଜନ ଏରୂପ-ମୋହକୂପେ ନିମଗନ
ଅରୂପରତନ ମଣି ଲଭିବା ତା ପକ୍ଷେ
ଅଟେ ଯଥା ଉଡ଼ୁମ୍ବର କୁସୁମ ଚୟନ
ସନ୍ତରଣି ଅବା କୁଜ୍ଝଟିକା-ନଦୀବକ୍ଷେ
କିନ୍ତୁ ଯେ ଜନ ବରଜି ରୂପରାଜ୍ୟସୀମା
ଅରୂପର ଅପରୂପ ରାଜ୍ୟେ ବିହରଇ
ଅରୂପରତନ ଅର୍ଥେ ଜୀବନର ବୀମା
ପ୍ରେମର ଅକ୍ଷୟ କୋଷେ ସେ ଜନ ସାଧଇ ।

---

# ବାଗ୍‌ଦେବୀ ପ୍ରାର୍ଥନା

ବର୍ଷେ ବର୍ଷେ ଆସୁ ମା ଗୋ ଆସୁ ନିତ ନିତ
ଆସୁ ପ୍ରତି ପ୍ରାଣେ ପ୍ରାଣେ ନିମିଷେ ନିମିଷେ
ଅଲକ୍ଷିତେ ସଂଗୋପନେ ପଶି, ପ୍ରାଣ ମୋର
ଭରି ଦେଉଅଛୁ କେତେ ମଙ୍ଗଳ ଆଶିଷେ ।
ଅନନ୍ତ ଦୟା ତୋହର ଜାଣିଲି ଜନନି !
ସ୍ଥାନାସ୍ଥାନ ନ ବାରି ଯା' ପଡ଼ୁଅଛୁ ଝରି
ନିଖିଳ ଭୁବନ ଭରି ଭୂମା ପରକାରେ
ଖେଳଇ ଗୋ ତବ ଲୀଳା-ସଙ୍ଗୀତ-ଲହରୀ ।
ତୋହର ବୀଣାରୁ ଝରି ମୋହନ ସଙ୍ଗୀତ
ଗ୍ରହୁଁ ଗ୍ରହେ, ଚନ୍ଦ୍ରୁଁ ଚନ୍ଦ୍ରେ, ଧାଏଁ ସୂର୍ଯ୍ୟୁଁ ସୂର୍ଯ୍ୟେ,
ସତତ ଅନନ୍ତ କୋଟି ସବିତୃମଣ୍ଡଳ
ଅପାର ମହିମା ତବ ଗାଏ ଜୟତୂର୍ଯ୍ୟେ ।
ତଥାପି ତ ଦୟା ବହି ଦୀନ ଅକିଞ୍ଚନେ
ନିରନ୍ତର ଆସୁଛୁ ମା ମୋ କୁଟୀରଦ୍ୱାରେ
କରୁଣା କୋମଳ ତବ ଶୀତଳ ଚରଣେ
ପରଶ ପରଶି ଯାଉଅଛୁ ବାରେ ବାରେ ।
ପାଦ୍ୟୋଟି ଆଣିବା ଦୂରେ ଥାଉ, ଦିନେ ହେଲେ
ହଙ୍ଖୋଳି ଦେଖିବାକୁ ତ ବଳି ନାହିଁ ମନ
ସଜାଡ଼ିତ ନାହିଁ ଦିନେ ବନ୍ଦାଣ ଥାଳିଆ
ଶ୍ୱେତ ପଦ୍ମଟିଏ କରି ନାହିଁ ତ ଚୟନ ।

ମାଣିକ୍ୟ ପ୍ରଦୀପ ଜାଳ ଜାଗର ନିଶାରେ
ବସି ନାହିଁ ଉତ୍କଣ୍ଠାରେ ତୋହ ପ୍ରତୀକ୍ଷାରେ
ଅସିବୁ ବୋଲିଣ ଧନେ ପୂଜା ଅର୍ଘ୍ୟସ୍ଥାଳୀ
ଭରି ରଖି ନାହିଁ ମାଗୋ ଷୋଡ଼ଶୋପଚାରେ ।
ତଥାପି ଅପାର ତବ କରୁଣା ଜନନି,
ଘେନି ନାହୁଁ ଧନେ ମୋର ଦୋଷ ତ୍ରୁଟି ଯେତେ
ମୁଁ ଭୁଲିଛୁ ବୋଲି ତୁ ତ ଭୁଲି ନାହୁଁ ଧନ
ଜାଣି ନ ଥିଲି ମୋଠାରେ ତୋର ଦୟା ଏତେ ।
ତୋ ଅସିବା ଅଶା-ପଥ ଚାହିଁ ସାରାନିଶି
ଉତ୍କଣ୍ଠାରେ ନିଦ୍ରାହୀନ ହୋଇ ନାହିଁ ସତ୍ୟ;
ବକ୍ଷେ ଧରି ନାହିଁ ମୁଦେ ସେ ପଦ-ପଙ୍କଜ
ମଙ୍ଗଳ ଅଶିଷ ତୋର ଝେଉ଼ ନାହିଁ ସ୍ୱତଃ ।
ମାନି ଏ ମୋ ହୃଦୟର ଗୋପନ ପ୍ରଦେଶେ
ସଦା ଶୂନ୍ୟ ରଖିଛ ଗୋ ତବ ସିଂହାସନ
ଭ୍ରମେ ହେଲେ ଇତରଙ୍କୁ ବରି ପ୍ରେମାଦରେ
ପର୍ଯ୍ୟଷିତ କରି ନାହିଁ ତୋର ସେ ଅସନ ।
ଅସିଛନ୍ତି କେତେ, ଦେବି ! ମୋ ପ୍ରାଣମନ୍ଦିରେ
ଅଯାଚିତ କରୁଣାର ପ୍ରଲୋଭନହସ୍ତେ
ସଭିଙ୍କି ବସାଇ ତବ ସିଂହାସନ ତଳେ
ପୂଜିଅଛୁ ଦୂରୁଁ ଭଣି 'ନମସ୍ତେ ନମସ୍ତେ'
ଜାଣିଛୁ ମୁଁ ନାହିଁ ମୋର ପୁଣ୍ୟ ଅଧିକାର
ବସିବାକୁ ଏକାସନେ ତୋ ସେବକସଙ୍ଗେ
ନାହିଁ ମୋ ସେ କଣ୍ଠ, ନାହିଁ ସେ ମୋହିନୀ ବୀଣା
ଗାଇବାକୁ ତୋ ମହିମା ତୋ ଚରଣ ସଙ୍ଗେ

ମାସ ତୋ ସୁଦୟା ହେଲେ, ଯେନ ଏ ଖଞ୍ଜଣୀ
ମନକୁ ଗାଇବ ମୋର ମନଭୁଲା ଗୀତି,
ବଟବୃକ୍ଷମୂଳେ ବସି ଗ୍ରାମ ଉପକଣ୍ଠେ
ଅବା ହାଟେ ଘାଟେ ବାଟେ, ଯହିଁ ହେବ ପ୍ରୀତି ।
ଜାଣେ ପୁଣି ନାହିଁ ମୋର ଉଚ୍ଚ ଅଧିକାର
ଲଭିବାକୁ ଆସନ ତୋ ଗାୟକ ସମାଜେ
ମଙ୍ଗଳ ଆରତି ବେଳେ ତବ ଲୀଳାକୁଞ୍ଜେ
ଅନୁମତି ନାହିଁ ପଶିବାକୁ ସେବା-ବ୍ୟାଜେ ।
ଏହିତକ ଅଧିକାର ଦେ' ମା ଦୟାମୟି ।
କୁଞ୍ଜଦ୍ୱାରେ ଉଭା ଥାଇ ହେମଝଁସିକରେ
ଆସିବେ ଯେକାଳେ ତବ ଭକତସମାଜ
ଗୋଟି ଗୋଟି ଧୋଇ ଦେବ ପଦ ପ୍ରେମଭରେ ।
ପିଇବ ସେ ପାଦୋଦକ, ଘେନିବ ମସ୍ତକେ;
ଶୁଣି ତାଙ୍କ ମଧୁଗୀତି ବିଶ୍ୱବିମୋହନ
ହେଉଥିବ ଅମ୍ବହରା ପଲକେ ପଲକେ
ସଫଳ ହୋଇବ ମୋର ଏ ଦେହଧାରଣା

---

## କବି ମଧୁସୂଦନ ୧' ଅ ୧୨।୧୦

—ପ୍ରଥମ ବାର୍ଷିକ ଶ୍ରାଦ୍ଧ ବାସରେ ପଠିତ—

କହୁଁ କହୁଁ ଗଲ, ଦେବ ସମୃଦ୍ଧର ବାଡ
ଶୂନ୍ୟ ତବ ଆସନ ତଳରେ;
ଦେଖିଣ ଅଛ କି ତାହା ଉକୋବିକ୍ରମନା
ବସି ଦୂର ଚନ୍ଦ୍ରସୂର୍ଯ୍ୟମଣ୍ଡଳେ ?
ନାହିଁ ଯହିଁ ଦ୍ୱେଷ, ହିଂସା, ରୋଗ ଅବଲତା,
"ଯହିଁ ଦେବେ ଭୁଞ୍ଜନ୍ତି ଅମୃତ"
ବହେ ନିରନ୍ତର-ଶାନ୍ତ ସୁଧାନିର୍ଝରଣୀ
ମୋକ୍ଷାଚଳ ନିତମ୍ବ ନିଃସୃତ ।
ନାହିଁ ଯହିଁ ମୋହ ନିଦ୍ରା ମୋହ ଜାଗରଣ
କୁସ୍ୱପ୍ନର ପ୍ରହ୍ଲାଦନ ବେଶ
ଜୟୋଲ୍ଲାସେ ନାହିଁ ଯହିଁ ମୋହ ମାଦକତା
ଶାନ୍ତିପୂତ ଅନାମୟ ଦେଶ ।
ନାହିଁ ଈର୍ଷ୍ୟା, ଅହୃଦ୍ୟତା, ବୈର, ପ୍ରବଞ୍ଚନ
ସୁଲଭ ଯେ ପ୍ରପଞ୍ଚ ଅହବେ
ସେ ଅନନ୍ତ କର୍ମକ୍ଷେତ୍ରେ ସେ କର୍ମ ଜୀବନ
ଥିବ କି ହେ ଉଦାସୀନ ଭାବେ?
ଅପୂର୍ଣ୍ଣ ହୃଦୟଗୀତ ବିଫଳ ବାସନା
ଘେନି ଯାଇଅଛୁ ନିତ୍ୟଧାମେ
ଚରମ ଉତ୍କର୍ଷ ସାଧି ଅବା ଭବପୁରେ
ଫେରିବ ହେ ଭୁବନ କଲ୍ୟାଣେ ।

ଢାଳିବାକୁ ଉନ୍ମାଦନୀ ମଧୁ ବୃଷ୍ଟି ଧାର
ଅନ୍ତରର ଜଳଜ ହୃଦୟେ
ରଚୁଛ କି ମଧୁଚକ୍ର ଉତ୍କଳର ପାଇଁ
ଅସରନ୍ତ-ଅସବ- ଅଶୟେ ।
କବିତା କୁସୁମବନେ ପ୍ରମତ୍ତ-ମଧୁପ
ସ୍ଥିର ଉତ୍ତମ ରାଧାନାଥ ପାଶେ
ମୋହନ ସଙ୍ଗୀତମୟ ବେଣୁ-ବୀଣାଗୀତ-
ମୁଖରିତ କବିକୁଞ୍ଜ-ବାସେ ।
ଯହିଁ ବାଲ୍ମୀକି ଆଦିକବି, ସତ୍ୟସନ୍ଧ
ବ୍ୟାସ, ଭବଭୂତି, କାଳିଦାସ,
ବଜାଇ ବାଗ୍‌ଦେବୀ ବୀଣା ଅମର ଝଙ୍କାରେ
ଲଭନ୍ତି କି ପରମ ଉଲ୍ଲାସ ।
ସପ୍ତରାଗ-ଷଡ଼ତ୍ରିଂଶ-ରାଗିଣୀ-ସେବିତ
ସେ ବୀଣାର ଉଲ୍ଲୋଳ ମୂର୍ଚ୍ଛନେ
ଅଯୁତ ଉପମା ଭାବ କଳ୍ପନାକୁସୁମ
ଫୁଟି ଉଠେ କବିତା-କାନନେ ।
ମଦନ-ମନୋଜ୍ଞ ପୁଷ୍ପ ତହିଁ ବାଛି ବାଛି
ତୋଳୁଛନ୍ତି "ଗଞ୍ଜାମ ଭୂଷଣେ";
ଗୁନ୍ଥନ୍ତି ବାଗ୍‌ଦେବୀ ମାଳା ଦୀନକୃଷ୍ଣ ଆଦି
ଜୟଦେବ ଶ୍ରୀ ମଧୁସୂଦନ ।
ଅଥବା କି ଅଛ ଯହିଁ ନବସନ୍ତ ସୁଖେ
ମହାପ୍ରାଣ ମନୀଷିନିକର
ଯାହାଙ୍କର ପୁଣ୍ୟସ୍ମୃତି ପ୍ରାଣର ସୌରଭ
ଚହଟଇ ଦେଶ ଦେଶାନ୍ତର ।

ଧର୍ମ୍ମକର୍ମ୍ମ ସମନ୍ୱୟେ ପୂତ ସୁପ୍ରଶାନ୍ତ
ଯାହାଙ୍କର ବିଶାଳ ହୃଦୟ
ନିଖିଳ-ଭୁବନ-ଜନ-ଦୁଃଖବିମୋଚନେ
ଅହରହ ହୁଅଇ ଅଥୟ !
ମହାତ୍ମା ରାମମୋହନ କେଶବସଂହତି
ଛନ୍ତି ଯହିଁ ଧାର୍ମିକଶେଖର
ନମସ୍ୟ ଈଶ୍ୱରଚନ୍ଦ୍ର କରୁଣାସାଗର
ପରଦୁଃଖେ ସତତ କାତର ।
ତହିଁ ବସି ଦେଖୁଛ କି ଉତ୍କଳର ଦଶା
ଦିବ୍ୟ ପ୍ରଭାମୟ ସିଂହାସନେ
ପରଦୁଃଖେ କାନ୍ଦଇ କି ସେ ହୃଦୟ ଆଜି
ପୂର୍ବପର କରୁଣ କ୍ରନ୍ଦନେ ।
କି ମହାକଲ୍ୟାଣମୟୀ ଶୁଭଙ୍କରୀ ଦୀକ୍ଷା
ମାତୃଭୂମି ମାତୃଭାଷା ପାଇଁ
ଲଭିଛ ହେ ସେ ମଣ୍ଡଳେ ? କହ ମହାପ୍ରାଣ !
ଅଶରୀର ବଚନ ଅଶାୟୀ ।
ଫେରି କି ଆସିବ ଘେନି ନିର୍ଲିପ୍ତ ହୃଦୟ
ଦ୍ୱିଗୁଣିତ ଉତ୍ସାହ ଶକତି
ବିଭିପରିକର ହୋଇ ସାଧିବାକୁ ଏକା
ଉତ୍କଳର ସମୂହ ମୁକତି
"ଉଡ଼ି ନୀଳମଣିମୟ ଅମ୍ବର ମାର୍ଗରେ"
ଚାଲେ ପକ୍ଷୀ ଯୂତାନ ଲହରୀ
ବହୁ ଊର୍ଦ୍ଧ୍ୱେ ଆସଇ ତ ଫେରି ନିଜ ନୀଡ଼େ
ସାନ୍ଧ୍ୟ ନୀଳ ଗଗନେ ସନ୍ତରି ।

ସେ ଆଶା ଅଳୀକ ସ୍ୱାର୍ଥ ମୋହେ ବିଜଡ଼ିତ
ନ କରେଁ ମୁଁ ସେ ଆଶାପୋଷଣ,
ଚିରମୁକ୍ତ ସେ ଆତ୍ମାର କାହିଁ ମନାସିବ
ମାୟାମୟ ପ୍ରପଞ୍ଚ ବନ୍ଧନ ।
ହେ ନରପୁଙ୍ଗବ ମୋର ମାଗୁଣି ଏତିକି
ଅସ୍ତୁ ତବ ଦିବ୍ୟ ଅବଧାନେ
ତବ ସ୍ୱଚ୍ଛ ଜୀବନର ସୁସ୍ନିଗ୍ଧ କିରଣ
ପଡ଼ୁ ପ୍ରତି ଉତ୍କଳୀୟ ପ୍ରାଣେ;
ସ୍ୱାର୍ଥ ଦ୍ୱେଷ ଜଡ଼ତାର ବିଶଲ୍ୟକରଣୀ
ପ୍ରେର ଦେବ ସେ ଗନ୍ଧମାଦନୁଁ
ଭବିଷ୍ୟର ଶୁଭ ଉଷା ଦରଶନେ ପାଉ
‘ସମଗ୍ର’’ ଉତ୍କଳ ସଦନୁଁ ।

---

## ৺ ମଧୁସୂଦନ ଦାସ C. I. E.

୧

ଶେଷକୁ ସତେ କି ହେ ଉତ୍କଳମଣି
ଖିଳ ଉତ୍କଳ·ଜନ·ଗଣ ଅଗ୍ରଣୀ
ନିର୍ମମଭାବେ କରିଗଲ୍ ଅନ୍ତର
ଦେଶମାତୃକା-ପୀଠ ପୁରୋଧାବର ।
ସ୍ନେହମୟୀ ଜନନୀ ଜନ୍ମଭୂମିକି
ଅକୂଳ ଶୋକଜଳେ ଭସାଇ ନକି
ଚଳିଲ୍ ଆଜି ମହାପ୍ରୟାଣପଥେ
ବୀରେନ୍ଦ୍ରସମ ଦିବ୍ୟ ପୁଷ୍ପକରଥେ ।
ସତ ବୋଲି ତ ଏହା ନ ହୁଏ ପ୍ରତେ,
ଶତ ସଂଶୟ ଜାଗେ ମୋ ହୃଦଗତେ ।
ବାଲ କିଶୋର ଯୁବା ପୃଣି ସ୍ଥବିର
ତଦନ୍ତେ ମୃତ୍ୟୁ ଧ୍ରୁବ ସିନା ପ୍ରାଣୀର ।
ଛିବ ଦେହେ ଏ ଚତୁର୍ବିଧ ଅବସ୍ଥା—
ପରମେଶ୍ୱର ନିୟନ୍ତ୍ରଣୀ ବ୍ୟବସ୍ଥା
ବୃଦ୍ଧ ବୋଲି ଦିନେ ମୋର କଳ୍ପନା
କରି ନ ପାରେ କଦାଚିତ କଳନା ।
ଦେଖିଲି ଯେବେ ଶୁଭ ମାହେନ୍ଦ୍ରକ୍ଷଣେ
ସେ ମଧୁର ମୂରତି ଦେଖିନୟନେ,
ଦେଖିଲି ସେ କାଳେ ତ ଥିଲ ସ୍ଥବିର
ଜ୍ଞାନ ବିଜ୍ଞାନ ବୟୋଭାରେ ଗମ୍ଭୀର ।

ଗତଲ ବହୁବର୍ଷ ତଥାପି କାହିଁ
ଚାର୍ଦ୍ଧକ୍ୟ ନଇଁ ପଡ଼ିଥିଲ ତ ନାହିଁ ।
ଯେଉଁ ବୃଦ୍ଧଙ୍କୁ ସେହି ବୃଦ୍ଧ ପ୍ରାଚୀନ
ଦେଖିଣ ଅସୁଥିଲ ଦନକୁଦନ ।
ସତେ ଯେମନ୍ତେ ଚିରସ୍ଥବିରରୂପେ
ଜନ୍ମିଥିଲ ବା ଅସି ଏ ଅନ୍ଧକୂପେ ।
ନିସର୍ଗ ନୀତିକ୍ରମ—ବାଲ୍ୟ କୈଶୋର
ଯୌବନ ଜରା ବା[illegible]ନ ଥିଲଟି ତୋର ।
ତେଣୁ ସେ ଦେହେ ସଂହାର କାଳର
ପ୍ରଭାବ ଥିଲା ବୋଲି ଲଭେ ମାତର
କଳି ନ ପାରି ମୋର ମୁଗ୍ଧ କଳ୍ପନା
କଲା ତୋ ଅମରତ୍ୱ-ସ୍ୱପ୍ନ-ରଚନା
ସତେ କି ଭାଙ୍ଗିବାକୁ ସ୍ୱପନ ମୋର
ଅସିଲା କାହୁଁ ଆଜି ବାସ୍ତବ ଘୋର
ସତ୍ୟ ସତ୍ୟ କି ତେବେ ଚିରକାଳକୁ
ଛେଉଣ୍ଡ କରିଗଲ ଅମ୍ଭମାନଙ୍କୁ ।
ଯାଇଛ ଯେଉଁ ଦେଶେ ସେ ଦେଶୁଁ କେହୁ
ଫେରି ନ ଅସେ କଦାଚିତେ ଯେ ଦେହୀ ।
ଚିରପ୍ରବାସୀ ପରି ଗଲଟି ଏକା
କୋଟି ଜନମେ ଆଉ ନ ହେବ ଦେଖା
ଶ୍ରୁତି କି ଶୁଣିବ ସେ ଗମ୍ଭୀର ବାଣୀ
ନେତ୍ର କି ଦେଖିବ ସେ ମଧୁର ଠାଣି ।
ଆଉ କେ ତେଜ ବୀର୍ଯ୍ୟ ମାଧୁର୍ଯ୍ୟ ଭରି
କହିବ କଥା ସଭାମଞ୍ଚ ମୁଖରି ।

୬

ଭାଙ୍ଗିଲା ମେରୁଦଣ୍ଡ ଉତ୍କଳ ମାତାର
ଅଙ୍ଗଠାରୁ ତ ଶିରୀ ତୁଟିଲା ତାର ।
ଥିଲେହେଁ କୋଟି ପୁତ୍ର ସର୍ବେ ଅଦକ୍ଷ
ରକ୍ଷକ ବିନା ଆଜ ହେଲେ ଅରକ୍ଷ ।
ନ ଥିଲେ କେହି ତବ ସମକକ୍ଷକୁ
ନାହାନ୍ତି କେହି ପୁଣି ଅଗପଛକୁ
ଜାଣି ତ ଥିଲ ଏହା ସମ୍ୟକରୂପେ
ବାତ ଲଭିଲ ସିନା ଏ ଅନ୍ଧକୂପେ ।
ତେଣୁଟି ଜନନୀଙ୍କ ଅରକ୍ଷ ଜାଣି
କୁଢ଼ଅ ଜଗିଥିଲ କୋଦଣ୍ଡପାଣି
ହେଲେହେଁ ଜରାଜୀର୍ଣ୍ଣ ରୁଗ୍ଣ ଶରୀର
ଅସ୍ଥିକଙ୍କାଳସାର ମହାସ୍ଥବିର ।
ଅତୀବ ଅପାରଗ ସୋଦରଗଣେ
ଅଯୋଗ୍ୟ ଜନ୍ମଭୂମି ଟେକ ରକ୍ଷଣେ
ଛାଡ଼ିଯିବାକୁ ବନ୍ଧୁ ନ ଥିଲା ମନ
ତେଣୁଟି ଦୀର୍ଘ କରିଥିଲ ଜୀବନ ।
ମାୟାବନ୍ଧନ-ନିକ୍ରନ୍ତନ ଚତୁର
ଏ ସ୍ୱତ ସିନା ବୀର ! ଇଚ୍ଛା ମୃତ୍ୟୁର
ନ ଥିଲା ମାୟାବନ୍ଧ ତବ ଜୀବନେ
ଦ୍ୱାପରେ ଦେବବ୍ରତ ଭୀଷ୍ମ ଯେସନେ ।
ସଂସାର ଜାଲେ ପଡ଼ି ସଂସାରୀ ଜନ
ଯାହା ଲଭି ନିଜକୁ ମଣନ୍ତି ଧନ୍ୟ

ସେ ସକଳ ପ୍ରପଞ୍ଚ-ମାୟା-ବନ୍ଧନ
ବାନ୍ଧି ନ ଥିଲା ବୀର ! ତବ ଜୀବନ ।
ନ ଥିଲେ ତ ସନ୍ତତ କଳନ୍ତ ଅଦ
ସ୍ୱଚ୍ଛନ୍ଦ ଗମନକୁ ଯେହ୍ନୁ ବିବାଦୀ
ବିଶୁଦ୍ଧ ପ୍ରେମମୟ ଆତ୍ମା ତୁମ୍ଭର
ନ ଥିଲା ତହିଁ କାମଗନ୍ଧ ମାତର ।
ନାହିଁ କାମନା ଯହିଁ ନାହିଁ ମରଣ
ନାହିଁଟି ମାୟା ଯାର ନାହିଁ ବନ୍ଧନ
ତେଣୁ ତ 'ଚେତାଘଠ' ପର୍ଯ୍ୟେ ସତ
ବାହୁଡ଼ାବଜେ କଲ୍ ସ୍ୱଇଚ୍ଛାମତ ।

୩

ଗତାନୁଗତକହିଁ ସ୍ୱଭାବ ଯାର
ସୁଦୂରପରାହତ ଜନ୍ମତ ତାର
ଚେମ୍ଣୀ ପ୍ରାୟେ ସେ ତ ଆଲୋକଦ୍ରୋହୀ
ରହେ ସେ ଚିରକୂପମଣ୍ଡୂକ ହୋଇ ।
ଦେଲ୍ ଯେ ମହାଶିକ୍ଷା ମହତୀ ଦୀକ୍ଷା
ସେ ନବଜ୍ଞାନ ପ୍ରେମ ଆଲୋକଶିଖା
କେହି ଆଦର୍ ବରି ନ ନେଲେ ଯେଣୁ
ନୈରାଶ୍ୟେ ବାହୁଡ଼ି ବା ଗଲ୍‌ଟି ତେଣୁ ।
ଧୋଟିଷ୍ଟୁ ଅନ୍ଧକାର ଦିବସ ଜିଣି
କୋଟିକେ ଗୋଟିଏ ତ ନାହିଁ ମନୀଷୀ
ଭବ ପଦାଙ୍କ ଯେହ୍ନୁ ଅନୁସରଣି
ବରିବ ଭବ ପନ୍ଥା ହୋଇ ଧୂରୀଣ ।

ସ୍ୱାର୍ଥକୁ ଦେଇ ବଳି ଜାତିପୀଠରେ
ପାଳିବ ସେବାବ୍ରତ ଅତି କଠୋରେ ।
କାୟ ମନ ବଚନ ଏକଧା କରି
ଦେଶମାତୃକାପୀଠ ପୁରୋଧା ସରି ।
ସତତ କାଳବଷ୍ଠାଙ୍କଠନେ ପ୍ରତିଷ୍ଠା
ବରଜିବାର ଯେଉଁ କଠୋର ନିଷ୍ଠା
ଧ୍ରୁବତାରା ପରାୟେ ବଟେ ଜୀବନେ
ମାତିବେ ଜନନୀର ହିତସାଧନେ ।

୨

ଉତ୍କଳ ବୀର ଥିଲେ; ଥିଲେ ବିଦ୍ୱାଣୀ
ଯୁଦ୍ଧେ ଥିଲେ ଅମୋଘ କୋଦଣ୍ଡପାଣି,
ନିର୍ଭୀକଚେତା ଥିଲେ ଓଡ଼ିଆ ବୀରେ
ମେଧାବୀପଣେ ଗଣ୍ୟ ଥିଲେ ମହୀରେ ।
ବୁଦ୍ଧି ବିଦ୍ୟା ବିବେକେ ନ ଥିଲେ ହୀନ
ଅଛି ତା ବହୁ ନିଦର୍ଶନ ପ୍ରାଚୀନ
ବୁଡ଼ୁଛି ଓଡ଼ିଶାର ସୌଭାଗ୍ୟରବି
ବିଷାଦେ ପୂର୍ବକଥା ଗାବନ୍ତି କବି ।
ଅମ୍ଭଭଳ ସଂକୀର୍ଣ୍ଣମନା ଏମନ୍ତ
ଏମନ୍ତ ଅଧୋଗାମୀ ପ୍ରବୃତ୍ତିମନ୍ତ
କୁଳାଙ୍ଗାରେ ଯେ ମଣେ ଜାତି ନମୁନା
ପୂରି ଜହ୍ଲେ ଅସ୍ଥା ହୁଏ ତା ଊଣା ।
ମାନିକ ତୁମ୍ଭଙ୍କୁ ଯେ ଦେଖିଛି ଥରେ
ଅସୂୟା-ଅନାବିଳ ସ୍ୱଚ୍ଛମନରେ

ଅତୀତ ଉତ୍କଳର ପୁରାଣ କୀର୍ତ୍ତି—
—ଗାଥାରେ ଜନ୍ମଇ ତା ସ୍ୱତଃ ପ୍ରତୀତ ।
ପୁରାଣ ଗ୍ରନ୍ଥେ ଥିଲା ହୃଦୟେ ତବ
ବାଜୁଥିଲ ପୁରା କଳାସୌଷ୍ଠବ
ସାହସ ଶୌର୍ଯ୍ୟ କତା ଯୁଦ୍ଧେ ବିକ୍ରମ
ସଭାରେ ବାକ୍‌ପଟୁତା ଅବା ଭୂଷଣ ।
ପୁରା ଉତ୍କଳର ଯା ଥିଲା ସନ୍ତକ
ସେ ସବୁ କରି ହୃଦ-ମଣିପଦକ
ଆଦର୍ଶ ଉତ୍କଳର ନମୁନା ସମ
ଉତ୍କଳ ଅଙ୍କ କରିଥିଲ ମଣ୍ଡନ ।
ଥିଲ ହୃଦୟବାନ ଉନ୍ନତମନା
ହୀନ ଜୀବିକାଜାଲେ ନ ହୋଇ ବଣା ।
ନିପୁଣ ବୁଦ୍ଧିଜୀବୀ ଲେଖନୀପାଣି
ଧନ ମାନ ମର୍ଯ୍ୟାଦା ଆଣିଲ ଟାଣି ।
ଅମାପ ଅର୍ଜଣି ଧନ ଦୌଲତ
ସଦର୍ଥେ ବ୍ୟୟ କଲ ଉନ୍ମୁକ୍ତହସ୍ତ
ସ୍ୱର୍ଣ୍ଣକୁ ମୃତ୍ତିକାର ବିଚାର ଜାଣି
ନ ଥିଲ ବ୍ୟୟକୁଣ୍ଠ କୁଞ୍ଚିତପାଣି ।
ଦେଶର ହିତେ ଦେଇ ସବୁ ଅଜାଡ଼ି
ଶେଷକୁ ହେଲ ସିନା ବାଟଭିକାରୀ ।
ଏ ହାତେ ବିତରିଲ ସେ ହାତେ ଆଣି
କି ଅବା ସବ୍ୟସାଚୀ ଶିଖଣ୍ଡିପାଣି ।

୫

ଯାଇଛ 'ଶବ'ରୂପେ ସର୍ବେ କହାଇ
ଆସିବ 'ଶିବ' ହୋଇ ଶିଙ୍ଗା ବଜାଇ

ଏହି ଆଶାକୁ କରି ଶେଷ ସମ୍ବଳ
ରହିଛୁ ଧୈର୍ଯ୍ୟ ଧରି ସିନା ଉତ୍କଳ ।
ଚାହିଁ ବସିଛୁ ତବ ବାହୁଡ଼ାପଥ
ସତେ କି ଲେଉଟିବ ରୁକୁଣାରଥ ।
ସତେ କି କାଳଚକ୍ର ବ୍ୟୂହ ଭେଦଣି
ଆସିବ ଫେରି ମୃତ୍ୟୁଞ୍ଜୟ ହୋଇଣି
ଅଶେଷ ବିପତ୍ତିରୁ କରଣି ତ୍ରାଣ
ସାର୍ଥକ କଲ "ମଧୁସୂଦନ" ନାମ ।
ତେଣୁ ତ ତ୍ରିସନ୍ଧ୍ୟାରେ ସେ ନାମ ସ୍ମରି
ଝୁରିବ ଉତ୍କଳର ଗ୍ରାମ ନଗରୀ,
ଅଭିନ୍ନ ନାମ ନାମୀ ଶାସ୍ତ୍ର ପ୍ରମାଣ
ଆମ୍ଭ ଭାଗ୍ୟକୁ ହେଉ ସୁଫଳବାନ,
ସ୍ମରି ତବ ନାମ ନିଶି ଦିବସ
ଲଭୁଁ ତବ ଆତ୍ମାର ପୂତପରଶ
ଧୂଳିଯାଉ ନିଖିଳ ଜଡ଼ତାପୁଞ୍ଜ
ଉତ୍କଳ ହୋଇ ଉଠୁ ମଧୁ-ନିକୁଞ୍ଜ,
ଘରେ ଘରେ ସର୍ବଦା ଭ୍ରମର ପରି
ଜନ୍ମନ୍ତୁ ମହାପ୍ରାଣ ବୀରକେଶରୀ ।
ଶୌର୍ଯ୍ୟେ ବୀର୍ଯ୍ୟେ ଔଦାର୍ଯ୍ୟେ ବିନ୍ଧାଣିପଣେ
ହୁଅନ୍ତୁ ତବ ସମ ଜଣକୁ ଜଣେ,
ଜଡ଼ତା ସଂକୀର୍ଣ୍ଣତା ଲଭୁ ବିଲୟ
ସାରା ଉତ୍କଳ ହେଉ ଶ୍ରୀମଧୁମୟ ।

---

# ଗଙ୍ଗାରେ ବନ୍ୟା

—୧—

(ଗ୍ରୀଷ୍ମ)

ଆଜି ମା ଏ କି ମୂରତି
ଧରି ସୁରସ୍ରୋତସ୍ୱତୀ
ଅସମ୍ଭାଳେ କ୍ଷିପ୍ରଗତି
ଧାଉଁ ଉଦ୍ଦାମେ,
ଉନ୍ମୁକ୍ତ ତରଙ୍ଗ-କେଶେ
ସର୍ବ-ସଂହାରିଣୀ ବେଶେ
ଖେଳି ପଶି ତୀରଦେଶେ
ନଗର ଗ୍ରାମେ;
ପ୍ଲାବି ଗ୍ରାମ ନଗରଚୟ
ଅକାଳେ ସୃଜୁ ଭୀଷଣ ଖଣ୍ଡପ୍ରଳୟ । ୧ ।
ଅଗଣନ ଜୀବରାଶି
ନୟନନିମେଷେ ନାଶି
ବିକଟ ହାସ୍ୟ ପ୍ରକାଶି
କ୍ରୂର ହରଷେ,
ବିସ୍ତାରି ତରଙ୍ଗୋର୍ମ୍ମି ବାହୁ
ତାଣ୍ଡବନୃତ୍ୟେ ଧାଉଁ
ଉଦ୍ଦଣ୍ଡେ ଘୂର୍ଣ୍ଣି ବାୟୁ
ସଙ୍ଗେ ରଭସେ;
ବଜ୍ରନାଦେ ଘୋଷି ଗମ୍ଭୀର
ଭୀଷଣ ଗର୍ଜନେ କରୁ ଶ୍ରୁତି ବଧିର । ୨ ।

ଭୀଷଣ ଆବର୍ତ୍ତମାଳ
କ୍ଷୁବ୍ଧ ଶୋ ତନୁ ବିଶାଳ
ପୋତପଙ୍କ୍ତି କରାଳ-
ଗ୍ରାସେ ପୂରାଇ
ସକଳଉଦ୍ୟମ ଛଳେ
ହର୍ଷେ ହସି କୁତୂହଳେ
ତୁମ୍ଭ ଘୋର ଚହଳେ
ଯାଅ ଚଳାଇ,
ଲଙ୍ଘି ବାଧା-ବନ୍ଧନରାଶି
ଅଦମ୍ୟ-ଅତୁଳ-ବୀର୍ଯ୍ୟ ଗର୍ବ ପ୍ରକାଶି । ୩ ।
ସର୍ବହର ରୁଦ୍ରଙ୍କର
ନୃତ୍ୟଲୀଳା ଭୟଙ୍କର
ସାଧିଣି ପରି ଶଙ୍କର—
ମୌଳି-ମାଳିନୀ,
ଭବ ଭୀମ ପ୍ରଳୟର
ଆଭାସ ସ୍ଫୁଲିଙ୍ଗମାତର
ଦେଉ ତୁ ଅଜ ଅମର-
ଧୂର-ବାହିନୀ;
ରୁଦ୍ର ଜଟାଜୂଟେ ବିଳସି,
ଏ ତାଣ୍ଡବ ଲୀଳା କିବା ଶିଖିଲୁ ରସି । ୪ ।
କାହିଁ ସେ ମଧୁମୂରତ
ସ୍ନିଗ୍ଧ ସୁଶୀତଳ ଅତ
ଯା ସ୍ପର୍ଶେ ମୃତ-ପଙ୍କଜ
ଲଭି ଜୀବନ

ଛଟକେ ଉଠିଲେ ଜାଗି
ହୋଇ ଶତ୍ୟସ୍ୱର୍ଗଭାଗୀ
ସଫଳ ହୋଇବ
ଭଗୀରଥ ବୋଧନ;
ସାର୍ଥକ ହୋଇଲା ତୋହରେ
ଜୀବନରୂପିଣୀ ନାମ ସରଭାମ୍ବରେ । ୫ ।
(ଅଜା) ସେ ମଧୁନାମ ବରଜ
ପ୍ରଳୟମଦେ ଗରଜ
କଳଙ୍କ ଅଛୁ ଅରଜ
ଜୀବଘାତନୀ,
ହୋଇ ଜୀବନରୂପିଣୀ
ହେଲୁଟି ଜୀବନାଶିନୀ
ଧ୍ୱଂସଲୀଳା ବିଳାସିନୀ
ହରଭାମିନୀ,
ନାଚ୍ ରଙ୍ଗେ ତୁଙ୍ଗ ତରଙ୍ଗେ,
ଆବର୍ତ୍ତ କୁଟିଳ ଭୀମ ଭ୍ରୂକୁଟିଭଙ୍ଗେ । ୬ ।
କାହିଁ ତୋ ସେ ଛବି ଶ୍ୟାମ
ରୁଚିର ନୟନାଭିରାମ
ପ୍ରଗାଢ଼ ନୀଲିମା-ଧାମ
ନୀରସମ୍ଭାର,
ଯାର ଶୀତଳ ପରଶ
ଜନନୀ-ସ୍ନେହୁଁ ସରସ
ଦଗଧ ବକ୍ଷେ ହରଷ
କରେ ସଞ୍ଚାର;

ମୃଦୁ ମଞ୍ଜୁ ତରଙ୍ଗଭଙ୍ଗେ
ଚନ୍ଦନ ଲେପ୍ୟ ନିଦାଘ-ତପତ ଅଙ୍ଗେ । ୭ ।
ଆତପ-ସନ୍ତପ୍ତ ଅଙ୍ଗ
ଶୀତଳଇ ତୋ କୁରଙ୍ଗ-
ନୟନ-ନୀଳ ତରଙ୍ଗ
ପରଶ ମାନେ,
ତୋ ଊର୍ମ୍ମି ଶୀକର ବହି
ମୃଦୁ ସମୀରଣ ବହି
ବିରହଜ୍ୱାଳା ଶମଇ
ବଧୂର ଗାନେ,
ଶ୍ୟାମଚ୍ଛବି କି ଶୋଭିବନ,
ପ୍ରକୃତିର ଅବା ନୀଳମଣି ଦର୍ପଣ । ୮ ।
ସେ ଛବି ମନୋମୋହନ,
ସେ ମଧୁର ପରଶନ,
ଅଲକ୍ଷିତେ ଆକର୍ଷଣ
କରେ ମୋ
ପୂରିତ ବାତ୍ସଲ୍ୟ ରସେ
ତୋ ନୀଳକାନ୍ତ ଉରସେ
ବିଳସିବାକୁ ହରଷେ
ପରମ ବିତ୍ତ
ମଣଇଁ ମୁଁ କରୁଣାମୟୀ
ତୋ କୋଳେ ଶରଣ ସର୍ବ ଜ୍ୱାଳା ହରଇ ।୯।
ତୋ ନୀଳ ଜଳେ ଜାହ୍ନବି,
ଅନ୍ତିମ ଶୟନ ଲଭି
ବାଞ୍ଛି ଉତ୍ତମ ପଦବୀ
ଲଭିବି ଯଦି

ପୂରିବ ମୋ ମନସ୍କାମ,
ଗମିବି କୈବଲ୍ୟଧାମ,
ସାର୍ଥକ ହେବ ତୋ ନାମ,
ଶ୍ରୀ ବିଷ୍ଣୁପଦୀ,
ଏ ଆଶାରେ ହୋଇ ଆଶାୟୀ,
ରହିଥିଲି ମାଗୋ ଶେଷ ଦିବସେ ଚାହିଁ ।୧୦।
କିନ୍ତୁ ଆଜି ମା ତୋହର
ଏ ରୂପ ପ୍ରଳୟଙ୍କର
ଦେଖି ଭୟେ ଥରହର
କମ୍ପେ ହୃଦୟ,
ଏ ମୂରତି ଭୟଙ୍କରୀ
ସୁଦୟାରେ ଗୋ ସମ୍ବରି
କରମା ହରସୁନ୍ଦରୀ
ଅକୁତୋଭୟ,
ଶରଣ୍ୟ ସନ୍ତାନ-ପାଳିନୀ
ଅଟ୍ଟହାସ୍ୟ ଛାଡ଼ ହୁଅ ସ୍ମିତହାସିନୀ । ୧୧ ।
ତୋର ସେ କଲୁଷହାରୀ
ନୀଳୋର୍ମିବାହୁ ପ୍ରସାରି
ନେ' ମା ଆଲିଙ୍ଗନ କରି
କୋଳେ ତୋହର,
ଅପମୃତ୍ୟୁ ଆଧି ବ୍ୟାଧି
ଜନ୍ମ ଜରା ମୃତ୍ୟୁ ଆଦି
ଯା ପରଶେ ନିରବଧି
ଦଗ୍ଧ ଅନ୍ତର,

ଏ ଜୀବନ ମରଣମୟ,
ତୃଷାନଳେ ଢଳେ ଢଳେ ଜ୍ୱଳେ ହୃଦୟ । ୧୨
ଉଲଟ ପ୍ରପଞ୍ଚ ବଶ
ପଶି ପ୍ରାଣେ ଅହର୍ନିଶ
ଆତ୍ମାକୁ ତୀବ୍ର କଲ୍ମିଷ-
ମୟ କରଇ,
ତୁ ସ୍ୱର୍ନଦୀ ସର୍ବଂସହା
ମାତୃସମା, ତୋ ପାପହା
ଲହରୀ-ବଲ୍ଲରୀ ମହା-
ବ୍ୟାଧି ହରଇ;
ତୋ କୋଳେ ଅନ୍ତିମ ଶୟନ,
ଅଟଇ ଗୋ ସର୍ବ ଭବବ୍ୟାଧି ହରଣ । ୧୩ ।

# ଗଙ୍ଗାରେ ବନ୍ୟା (୨)

ଧାଏଁ ଏ ନୀର-ସମ୍ଭାର
କରି ବେଗେ ଫେନୋଦ୍ଗାର
କି ଅଲଙ୍ଘ୍ୟ ଦୁର୍ନିବାର
ମନ୍ଦାକର୍ଷଣେ,
ଅକ୍ଲାନ୍ତ ଅଶ୍ରାନ୍ତ ଗାନେ
ଧାବଇ ଦିବସ ସ୍ୱନେ
ପଲକବିହୀନ ନେନେ
କି ଉଛାଟନେ,
ଭଲେ ମାନ ନ ହୋଇ ଥୟ,
ଉଦ୍ବେଗେ ଧାବଇ ଶର-ଶୃଙ୍ଖଳାମୟ । ୧ ।
ପଥେ ପରିପନ୍ଥୀ-ସଙ୍ଗେ
ଏଡାଇ ବିଦ୍ରୂପେ ବ୍ୟଙ୍ଗେ
ନାଚଣି ଭୃଙ୍ଗ ତରଙ୍ଗେ
ଧାଏଁ ଉଲ୍ଲାସେ,
ଲକ୍ଷ୍ୟଭ୍ରଷ୍ଟ ନୋହି କଦା
ଗମଇ ସଦା ସର୍ବଦା
ସର୍ବ-ପରିଣତି-ପ୍ରଦା
ପୂର୍ଣ୍ଣତା ଆଶେ;
ଯାଇ ସିନ୍ଧୁ ବିଶାଳ କୋଳେ,
ଢାଳିଦିଏ ଅଙ୍ଗ ମହାଆନନ୍ଦହିଲ୍ଲୋଳେ । ୨ ।

ଏମନ୍ତେ ସେ ନୀରକଣା
ବାରିଧି-ପ୍ରେମେ ଭୁଲିନା
ହୋଇ ରହେ ବାଟବଣା
ଗନ୍ତବ୍ୟ ଭୁଲି,
ନିମେଷେ ତୁଟଇ ଭ୍ରମ
ମୋହନ ସ୍ୱପନ ସମ
ହୃଦୟ ଫାଟେ ବିଷମ
ଶୋକେ ବ୍ୟାକୁଳି;
ମନେ ମନେ ଭାବେ ଏମନ୍ତେ,
ଅନନ୍ତ ସନ୍ତାନ ମୁଁ ଯେ ଯିବି ଅନନ୍ତେ ।୩।
ସ-ସୀମ ସାନ୍ତ ସାଗର
ଅଶ୍ରାନ୍ତ ନର୍ତ୍ତନପର
ନୁହଇ ମୋ ଜୀବନର
ଲକ୍ଷ୍ୟ ଚରମ,
ନିଜେ ସିନ୍ଧୁ କର୍ମ ପାଶେ
ବନ୍ଧ ଥାଇ ହା ହୁତାଶେ
ବ୍ୟାକୁଳେ ଲୋଡ଼େ ସଦା ସେ
ନିଧି ପରମ;
ଅଜସ୍ର ତରଙ୍ଗ ନର୍ତ୍ତନେ,
ସାହି ସାହି ଡାକେ ମର୍ମନ୍ତୁଦ ବେଦନେ ।୪।
ମାନବର ବ୍ୟଥିତ ବିନ୍ଦୁ-
ସମଷ୍ଟିରେ ଗଢ଼ା ସିନ୍ଧୁ-
ଆବେଗଭରା ତା ଇନ୍ଦୁ-
ବର୍ଦ୍ଧିତ ବକ୍ଷ

ବ୍ୟାକୁଳେ ବେଦନାଗୀତ
ଗାଏ ଯେ ଅମୂର୍ତ୍ତ ନାତ
ସେ କି ମୋ ଅନ୍ତିମ-ଘାତ
ଚରମ ଲକ୍ଷ୍ୟ;
ଏହା ହବ ସେ ନୀରକଣା,
ନବ ଅନୁରାଗେ ପୁଣି ହୁଏ ଉନ୍ମନା । ୫ ।
ଏମନ୍ତେ ମୋହ ଭଞ୍ଜନେ,
ରବିରଶ୍ମି ପରଶନେ
ଉଦ୍‌ବେଗରେ ସମୀରଣେ
ଉଠେ ବିଳସି,
ଚଢ଼ିଣ ଅନିଳରଥେ
ଭ୍ରମଇ ଆକାଶପଥେ
ମନୋରଥ ପୂର୍ଣ୍ଣ ସତେ
ହେବ ଭରସି;
ଅହୋ କି ନିୟତି ଲେଖନ,
ଭ୍ରମି ଭ୍ରମି ପୁଣି ଭଜେ ଅଧଃପତନ । ୬ ।
ପୁଣି ବିନ୍ଦୁରୂପେ ଦ୍ରବି
ଭ୍ରମି କେତେ ଶୈଳାଟବୀ
ଅଗଣିତ ଶ୍ୟାମଛବି
ନଗର ଗ୍ରାମ,
ବନ୍ଧୁ ବନ୍ଧ ଅତିକ୍ରମି
ବାଧା ବନ୍ଧନେ ନ ଦମି
ମିଳେ ପୁଣି ଭ୍ରମି ଭ୍ରମି
ବାରିନ୍ଧ ଧାମ

ଅଦମ୍ୟ ସେ ଅଧ୍ୟବସାୟ,
ରବାବରେ ପୁଣି ତୁଷ ଶୀକରଶ୍ୱାୟ । ୭ ।
ଉଠି ବହ୍ୱାୟୁସପଥେ,
ଭ୍ରମଇ ବାଷ୍ପୀୟ ରଥେ
ଅପୂରଣ ମନୋରଥେ
ଅକ୍ଲାନ୍ତ ଶ୍ରମେ,
ଭ୍ରମି ଭ୍ରମି ପୁନଃପୁନଃ
ନୈରାଶ୍ୟେ ନ ହୋଇ କ୍ଷୁନ୍ନ
ଭାଗ୍ୟ ଅଦର ମଜ୍ଜନ
ମର ମରମେ;
ନିଗୂଢ଼ ଏ ବଧି ବ୍ୟବସ୍ଥା,
ଅନନ୍ତ ଗମନ ଏ ଯେ ଅନନ୍ତ ପନ୍ଥା । ୮ ।
ନାହିଁ ସୀମା; ନାହିଁ ଶେଷ,
ନାହିଁକ କଳନା ଲେଶ;
ସତେ କ ସେ ନିରୁଦ୍ଦେଶ୍ୟ
ବୃଥା ଭ୍ରମଣ,
ଲକ୍ଷ୍ୟହୀନ ଭ୍ରାନ୍ତ ଗତ
ଅଟଇ ବା ? ଏ ଶକତ—
ଅପଚୟ ମାଦ ପ୍ରତ—
ପଦକ୍ଷେପଣ;
ବୃଥା ଅବା ଏ ଗତାୟାତ,
ଅର୍ଥହୀନ ଶକ୍ତିକ୍ଷୟ ବଭ୍ରମ ଜାତ ? ୯ ।
ଜୀବାତ୍ମା-ନନ୍ଦନ୍ତୁ ଝଡ଼
ଭବକୁମ୍ଭୀପାକେ ପଡ଼ି

ଯାହି ଯାହି ଘୁଡ଼େ ରଡ଼
ଘୋର ଘୂର୍ଣ୍ଣନେ,
ଜନ୍ମ ଜରା ମୃତ୍ୟୁ ଆଧି
ଲଭି ବିବିଧ ଉପାଧି
ଗମନାଗମନେ ମାତ
କର୍ମ୍ମ ବନ୍ଧନେ,
ମହାଲକ୍ଷ୍ୟ ମୋହେ ବିସ୍ମରି
ଉତ୍ଥାନପତନେ ଲିପ୍ତ ଦିବା ଶର୍ବ୍ବରୀ । ୧୦ ।
କେବେ ଏ ଭ୍ରାନ୍ତ-ଭ୍ରମଣ
ହେବ ଚିର ସମାପନ
ଛିଡ଼ିବ ଭବ-ବନ୍ଧନ
କର୍ମ୍ମ-ଶୃଙ୍ଖଳ,
ମେଣ୍ଟିବ ସକଳ କ୍ଲାନ୍ତି
ଭୁଞ୍ଜିବ ନିର୍ମ୍ମଳ ଶାନ୍ତି
ଲଭି ଜ୍ୟୋତିର୍ମୟ କାନ୍ତି
ପୁଣ୍ୟ ଉଜ୍ଜ୍ୱଳ;
ବିଶ୍ରମି ଅନନ୍ତଶୟନେ,
କ୍ଷୀରାମ୍ବୁଧିତଟେ କଳ୍ପବଟ ଚରଣେ ? ୧୧ ।

---

## ମୃତ୍ୟୁଚିନ୍ତା

ଜନ୍ମିଲେ ମରଣ ଧ୍ରୁବ,
ନାହିଁ ତାର ଶୁଭାଶୁଭ,
ପୂରିଲେ ମାନବଙ୍କ କୁମ୍ଭ
ପଡ଼େ ଉଚ୍ଛୁଳି.
ଅମୋଘ ବିଧାନ ତାର
ଲଙ୍ଘିବାକୁ ଶକ୍ତି କାର,
ନୁହେ ତ ଏ ଫିଟିବାର
ବ୍ରହ୍ମଶାଙ୍କୁଳି;
ଜନମ ମରଣ ବନ୍ଧନେ,
ବନ୍ଧାଏ ନିଖିଳ ବିଶ୍ୱ ହାସ୍ୟ କ୍ରନ୍ଦନେ । ୧ ।
ବିଧିବିଧାନ ବିଚାରି
ସୁମହାନ ସୁପବିତ୍ର,
ନିଖିଳ ବିଶ୍ୱର ମିତ୍ର
ଶାସେ ବସୁଧା,
ଯେଉଁ କୃପାମୟ ସ୍ୱାମୀ;
ଗର୍ଭେ ସଞ୍ଚରିବା ଜାଣି
ମାତୃସ୍ତନେ କାହୁଁ ଆଣି
ସଞ୍ଚିଲେ ସୁଧା;
ଅଯାଚିତ ସେହୁ କୃପାରେ,
ନିର୍ଭର କରି ବିଶ୍ୱାସ ନ କଲୁ ବାରେ । ୨ ।

'ତେ'ର ହତ ତାଙ୍କ ଯେତେ
ଜଣା, ତୋତେ ନାହିଁ ଚେତ
ତେବେ ବୃଥା କାହିଁ ଏତେ
ବାଗାଡ଼ମ୍ବର,
ତୁ ଯାକୁ ମଣୁ ରେ ହତ
ସେ ତୋର ମୂର୍ତ୍ତି ଅହତ
ଏଭଳି ତ ବିପରୀତ
ବୁଦ୍ଧି ତୋହର;
ତୁ ରେ କ୍ଷୁଦ୍ର କୀଟ ସମାନ,
ସେ ଯେ ଅଚିନ୍ତ୍ୟ ଶକତି ଭୂମା ମହାନ । ୩ ।
କେମନ୍ତେ ତୋ କ୍ଷୀଣଦୃଷ୍ଟି
କଳିବ ରେ ତାଙ୍କ ସୃଷ୍ଟି,
ତୋର ଯେଣୁ ଅତି ମୁଷ୍ଟି-
ମେୟ ଶକତି ?
କ୍ଷୀଣଦୃଷ୍ଟି କ୍ଷୁଦ୍ର ପ୍ରାଣ
ସ୍ୱଳ୍ପ ଆୟୁ, କ୍ଷୁଦ୍ର ଜ୍ଞାନ
ମାନବ ସବଙ୍କ ସମାନ
ତୋର ଜକତ;
ତୋ ଖଞ୍ଜଣୀ ବାଜି ବେତାଳେ,
ଅପାତ-ମଧୁର ମାନବ ଗରଳ ଢାଳେ । ୪ ।
ଯେ ମୋହନବଂଶୀ ଗାନେ
ନାଚିଲ ଏ ବିଶ୍ୱଧାମେ
ଖେଳଯାଏ ପ୍ରାଣେ ପ୍ରାଣେ
ଅନନ୍ଦଧାର,

ଧୂଳିରୁ ଧଉଳ ଯାଏ
କି କ୍ଷୁଦ୍ର କି ମହାକାୟେ
ସର୍ବେ ଜଳେ ମୀନପ୍ରାୟେ
ବ୍ରହ୍ମାଣ୍ଡସାର;
ଯେ ସଙ୍ଗୀତେ ହୋଇ ମଗନ,
ଅନନ୍ଦେ ଅନୁଭବନ୍ତି ଭୂମା-ଜୀବନ । ୫ ।
ସେହି ତାନ ମାନ ଲୟ
ଧରି ଗାଅ ତାଙ୍କ ଜୟ
ସର୍ବଦା ଅକୁତୋଭୟ
ହେବୁ ଯଦ ରେ.
ସେ ବିଶ୍ୱମୋହିନୀ ଗୀତ-
ସ୍ୱରେ ବାନ୍ଧି ଖଞ୍ଜଣୀଟି
ଅନନ୍ତ ବ୍ରହ୍ମାଣ୍ଡ ପ୍ରୀତ
ଗାଅ ଗମ୍ଭୀରେ;
ଦୁର୍ଗମେ ତୋ ଫିଟିବ ରାହା,
ତାଙ୍କ ବଳୀୟାର ଭୁଜ ହୋଇଲେ ସାହା । ୬ ।
ଗୋଠୁଁ ବାହୁଡ଼ିବା ଡାକ
ପଡ଼ିଲଣି ଗୃହପାଖ
ନ ଶୁଣିଲେ କି ବିପାକ
ଜାଣୁ ରେ ତାହା,
ନ ଶୁଣି ସଙ୍କେତ ବଂଶୀ
ମଉଆଳା ମର ଧସି
ଏ ଗଳି ସେ ଗଳି ପଶି
ଭୁଲିବୁ ରାହା,

ଗହନ କାନନ ଭୀଷଣ,
ଅନ୍ଧକାରେ ଚଢ଼ି ପାରିବୁ ଟି କେଷଣ । ୭ ।
ଅନୁସରି ସେ ମୁରଲୀ
କୁଞ୍ଜେ କୁଞ୍ଜେ ଯାଅ ଚଳି
ସର୍ବ ବାଧା ବିଘ୍ନ ଦଳି
ସରଳ ପଥେ,
ବାଟେ ଘାଟେ ନ ବିଶ୍ରମି
ବନେ ଗହନେ ନ ଭ୍ରମି
କୁଞ୍ଜପଥ ଅତିକ୍ରମି
ସୁମନୋରଥେ,
ଅଚିରେ ମିଳିବୁ ସେଠାରେ,
ସେ ଗୀତି ଝରଇ ଯହିଁ ଅଜସ୍ରଧାରେ । ୮ ।
ଦୂର ପରବାସୀ ପରି
ପରିଜନଙ୍କୁ ବିସ୍ମରି
ରହିଗଲେ ଚିର୍ଦିନରି
ପଥରେ ପଡ଼ି,
ବାହୁଡ଼ା ବେଳକୁ ତୋର
ବେଳ ହେବଟି ଭଙ୍ଗୁର
ପଡ଼ି ରହିଥିବୁ ଦୂର-
ପ୍ରବାସେ ସଡ଼ି;
ଅସ ବେଗ ବେମନ୍ତ ଛାଡ଼ି,
ଗୋଧନ-ବାହୁଡ଼ାବେଳ ଅସିଲା ମାଡ଼ି । ୯ ।
ଯିବାର ଯେବେ ନିଶ୍ଚିତ
ମଠ କରି କି ଉଚିତ

ରହିବାର ନୁହଇ ତ
ଏ ପାନ୍ଥଶାଳା
ବାକ ଅଛି ଶାସ୍ତ୍ର-ପୂତ,
ମୃତ୍ୟୁ ଅମୃତର ଦୂତ,
ତା ଗଳାରେ ନ ଦେଲ ତ
ବରଣମାଳା
ମରଣେ ନ କଲେ ବରଣ—
ଅମରପଦକୁ କ ରେ ହେବୁ ଭାଜନ ? ୧୦ ।
ଆପଣା ଜନକୁ ପର
ପରାୟେ ଭାବ ତୋହର
ଜୀବନେ କ ଭୟଙ୍କର
ଦଶା ନୋହୁଛି,
ଶେଷେ ପୁଣି ସେହି ଭ୍ରମେ
ଜଡ଼ ହୋଇ କ୍ରମେ କ୍ରମେ
ଜୀବନ କ ପଣ୍ଡ୍ରମେ
ସାରବୁ ଛି, ଛି,
ସାରା ଜୀବନ ତୋ ଏମନ୍ତେ,
ମୃତ୍ୟୁଭୟେ ମରୁ ମରୁ ପିବ ବାଅର୍ଥେ । ୧୧
ମୃତ୍ୟୁ ଜୀବନର ମିତ୍ର
ଏହା ତୁ ମଣୁ ବଚିତ୍ର
ଧାଏଁ ଜୀବନ-ବହିତ୍ର
ମୃତ୍ୟୁ ଉଦ୍ଦେଶେ,
ମୃତ୍ୟୁରୁ ମୃତ୍ୟୁକୁ ଡେଇଁ
ଯାଉଁ ଯାଉଁ ମିଳା ସେହି

ଅମର ଧାମେ ସର୍ବେହିଁ
ମିଳିବେ ଶେଷେ;
ମରଣହିଁ ଜୀବନ ସାହା,
ଏବଧି ରହିଲେ ସିନା ନଶିଲନାହା । ୧୨ ।
କରକା ବିଗ୍ରହ ଧରି
ପ୍ରନଷ୍ଟ ଜଳ ଯେପରି
ଅଗ୍ନି ପରଶରେ କରି
ଯାଏ ସ୍ୱରୂପେ,
ମର୍ତ୍ତ୍ୟ ଜଡ଼ିମା-ଜଡ଼ିତ
ତଥା ଏ ପ୍ରାଣ ଦୂଷିତ
ମୃତ୍ୟୁରେ ସୁନିଯୁନ୍ତିତ
ହୋଇ ସେ ରୂପେ;
ମୃତ୍ୟୁରେ ହୁଅଇ ଅମର,
ମୃତ୍ୟୁହିଁ ସ୍ୱରୂପେ ସତ୍ୟ ଶିବ ସୁନ୍ଦର । ୧୩ ।
ମୃତ୍ୟୁ ନ ଥିଲେ ଜୀବନେ
କେମନ୍ତେ ବା ଜୀବଗଣେ
ରହନ୍ତେ ଦେହ ଧାରଣେ
କି ସୁଖେ ମୋହ,
ପାପ ତାପ ଜ୍ୱାଳାମୟ
ଏ ଆଧି ବ୍ୟାଧି ନିଳୟ
ତହିଁ କି ଲଭନ୍ତେ କହ
ଅମର ହୋଇ;
ଜଳି ପୋଡ଼ି ଦଗଧି ହୋଇ,
ବଞ୍ଚିବା କି ଶ୍ରେୟ କଷ୍ଟଶେଯରେ ଶୋଇ । ୧୪ ।

ଏଥି ତ ଅଦକନ୍ଦର
ନାହିଁ ଯେ ପ୍ରେମସୁନ୍ଦର,
ନାହିଁ ତ ପଦ୍ମନନ୍ଦର
କଣ୍ଟା ମାତର,
ଯାହାର ଅଶାରେ ମାତ
ପ୍ରାଣୀଗଣ ଦନ ରାତ
ଧାଉଁଅଛନ୍ତି ନିଧାତ
ହୋଇ କାତର;
ଯେ ମାଧୁରୀ ଅସ୍ୱାଦ ପାଇଁ,
ଭବ ତେଜ ଭବରାଜ୍ୟ ସରବେ ଧାଇଁ । ୧୫ ।
ମଦନ-ଦହନ ଭବ
କେବେ ଶିବ, କେବେ ଶବ,
କେବେ ଭଗବତୀଧବ
କେବେ ଭିଖାରୀ,
କେବେ ବା ତାଣ୍ଡବରଙ୍ଗେ
କେବେ ଭୂତ ପ୍ରେତ ସଙ୍ଗେ
କେବେ ଭସ୍ମ ଅସ୍ଥି ଅଙ୍ଗେ
ଭୁଜଙ୍ଗଧାରୀ;
ମୃତ୍ୟୁଞ୍ଜୟ ସେ ପଦତଳେ,
ମନ କି ମାନଇ ରହିବାକୁ ନିଷ୍ଫଳେ । ୧୬ ।
(ସେ ତ) ବେଲହୁଁ ପାଇଛୁ ଭାବ;
ତହୁଁ ବଳାଅଛୁ ଠାବ
ମଦନ-ମୋହନ ଭାବ-
ଗ୍ରାହୀଙ୍କ ଦେଶେ,

ଯହିଁ ମଦନମୋହନ
ଲୀଳାମୃତ ବରଷଣ
ଖିଳ ବିଶ୍ୱ ଆକର୍ଷଣ
କରେ ବିଶେଷେ;
ବିଶ୍ୱମନ ମଥି ମନ୍ମଥ,
ଯହିଁ ଆପେ ମୁଗ୍ଧ ହୋଇ ହୁଡ଼ଇ ପଥ । ୧୭ ।
ସକଳ ମଧୁର ତହିଁ
ସର୍ବ୍ବଦା ମଧୁ ଝରଇ
ମଧୁରେ ଯାଉଛି ବହି
ମାଧୁରୀଧାର,
ନାମେ ମଧୁ ଧାମେ ମଧୁ
ମଧୁ ଛାଳେ ଦୀନବନ୍ଧୁ
ମାଧୁରୀମୟୀ ଦିଗ୍‌ବଧୂ
ସେ ଦେଶସାର,
ମଧୁର, ମଧୁର, ମଧୁର
ମଧୁର ତରଙ୍ଗଲୀଳା ପ୍ରେମସିନ୍ଧୁର । ୧୮ ।
(ତହିଁ) କାମ କ୍ରୋଧ ମଧୁମୟ,
ମଧୁମୟ ଲଜ ଭୟ,
ବାସନା କାମନାଚୟ
ମାଧୁରୀ ବୋଳା,
ସେ ମଧୁନଗରେ ପୁଣି
ଯେତେକ ତରୁଣ ତରୁଣୀ
ମଧୁବ୍ରତ ଗୁଣି ଗୁଣି
ସରବେ ଭୋଳା;

ମଧୁର, ମଧୁର, ମଧୁର,
ମଧୁରେ ମନ୍ତ୍ର ମଧୁର ସେବା ଚତୁର । ୧୯ ।
ଅସେୟ ମଧୁ, ହାସେୟ ମଧୁ
ଲସେୟ ମଧୁ, ଦାସେୟ ମଧୁ
ମଧୁମୟ ବରବଧୂ-
ମିଳନଛବି,
ମଧୁର ମଧୁର ଗୀତ
ମଧୁମୟ ଛନ୍ଦେ ନୀତ
ମଧୁକଣ୍ଠେ ଗାଏ ପ୍ରୀତ-
ରସିକ କବି,
ମଧୁରେ, ମଧୁରେ, ମଧୁରେ,
ମଧୁଗନ୍ଧବହ ବହେ ସେ ମଧୁପୁରେ । ୨୦ ।
ମଧୁର ମଧୁପକୁଳ
ମଧୁ ପିଇ ହୋଇ ଢୁଳ
ବସି ପଡୁଛନ୍ତି ଫୁଲ
ଫଳେ ମଧୁରେ,
ମଧୁର ପ୍ରଭାତକାଳେ
ମାଧବୀ ଲତାର ଡାଳେ
ମଧୁର ସୁସ୍ୱର ଡାଳେ
ପିକ ବଧୂରେ;
ମଧୁର ମଧୁର ମଧୁର,
ମଧୁରମିଳନେ ସର୍ବେ ପ୍ରେମବିଧୁର । ୨୧ ।
ମଧୁରେ ଉଡ଼ଇ ରେଣୁ
ମଧୁରେ ବାଜଇ ବେଣୁ

ମଧ୍ୟରେ ଯମୁନା ଢେଉ
ବହେ ଓଲଟି,
ମଧୁମୟ ଲୀଳାଧାମ
ମଧୁମୟ ଗୁଣଗ୍ରାମ
ମଧୁମୟ ଏଥି କାମ
ପ୍ରେମେ ପାଲଟି;
ନ ଲୋଡ଼ଇ ଭବେ ବାହୁଣ୍ଡି,
ମଦନମୋହନ ପ୍ରେମସିନ୍ଧୁରେ ବୁଡ଼ି । ୨୨ ।
(ତହିଁ) ମଧୁରେ ବହ ମଳୟ
ଗାଏ ଗୀତ ମଧୁମୟ
ମାଧୁରୀର ଜୟ ଜୟ
ନବ ବସନ୍ତେ,
ମଧୁର ରୂପ-ସାଗରେ
ମାଧୁରୀର ତରଙ୍ଗରେ
ମାଧୁର୍ଯ୍ୟଛଟା ପ୍ରସରେ
ଦଗ ଦଗନ୍ତେ;
ମଧୁର ମଧୁର ମଧୁର
ମାଧୁରୀ ତରଙ୍ଗେ ଶୋଭାସିନ୍ଧୁ ବନ୍ଧୁର । ୨୩ ।
ବଚନେ ଗୀତମାଧୁରୀ
ଗମନେ ନୃତ୍ୟ-ଚାତୁରୀ
ଭର୍ତ୍ସନେ ପ୍ରେମ ମଞ୍ଜୁରୀ
ଯୌବଣ ପୁରେ,
ମାନେ ଅଭିମାନେ ଯହିଁ
ମାଧୁରୀ-ଧାର ଝରଇ

ମଧୁର ବାଉଁଶେ ବନ୍ଧୁ
ଫୁଙ୍କେ ମଧୁରେ;
ସକଳ ମଧୁର ମଧୁର,
ମଧୁର ଚକୋରଲୀଳା ଶରଦଚନ୍ଦ୍ର । ୨୪ ।
ମଧୁ ଧ୍ୟାନେ ମଧୁ ଜ୍ଞାନେ
ମଧୁ ମାନେ ଅପମାନେ
ମଧୁରେ ବାଜଇ ପ୍ରାଣେ
ପ୍ରେମର ତୂରୀ,
ମଧୁ ଶୟନେ ସ୍ୱପନେ
ମଧୁ ନିଦ୍ରା ଜାଗରଣେ
ମଧୁ ଜୀବନେ ମରଣେ
ରହିଛି ପୂରି;
ମଧୁର ମଧୁର ମଧୁର,
ମଧୁର ପ୍ରେମର ଲୀଳା ବିଶ୍ୱବନ୍ଧୁର । ୨୫ ।
ଘଟେ ମଧୁ, ପଟେ ମଧୁ,
କଟ କପଟରେ ମଧୁ,
ଗୈରି ଲମ୍ପଟହିଁ ବନ୍ଧୁ
ସେ ମଧୁପୁରେ,
ମଧୁ ଦଣ୍ଡ, ମଧୁ କ୍ରୋଧ,
ମଧୁର ଶାସନଧାରି
ମଧୁମୟ ରାଜ୍ୟସାରି
ମାଧୁରୀ ପୂରେ;
ମଧୁର ମଧୁର ମଧୁର,
ମଧୁର ପ୍ରେମ ଶାଙ୍କୁଳୀ ବନ୍ଧୁ ବନ୍ଧୁର । ୨୬ ।

ମଧୁର ନୟନତାରା
ମଧୁର ଲୋତକଧାରା
ମଧୁର ପ୍ରେମର କାରା —
ବାସ ମଧୁର,
ମରମେ ମରମେ ଛନ୍ଦ
ମଧୁର ଶୃଙ୍ଖଳେ ବନ୍ଦୀ
ମଧୁରେ ବାନ୍ଧିବା ଫନ୍ଦ
ପ୍ରାଣବନ୍ଧୁର;
ମଧୁର ମଧୁର ମଧୁର,
ସେ ମାଧୁରୀ ଲୋଭେ ଆତ୍ମା ସଦା ଆଧୁର । ୨୭ ।
ଜୀର୍ଣ୍ଣ ବାସ ପୁରାତନ
ତେଜି ଯେସନ ନୂତନ
ଅଙ୍ଗେ କରଇ ଧାରଣ
ମାନବ ସୁତ,
ଛାଡ଼ି ଜୀର୍ଣ୍ଣ ଦେହ ତଥା
ଜୀବାତ୍ମା ଧାଏଁ ଅନ୍ୟଥା
ନବ କଳେବର ଯଥା
ଥାଏ ପ୍ରସ୍ତୁତ;
ନିତ୍ୟ ନବ ନବ ବିଗ୍ରହେ
ଅଧିଷ୍ଠାନକୁ ଇଚ୍ଛଇ ଅତି ଆଗ୍ରହେ । ୨୮ ।
ସୁନ୍ଦରୁଁ ସୁନ୍ଦରତର
ଅନ୍ଧକାରୁ ଆଲୋକର
ରାଜ୍ୟକୁ ଯେ ବନ୍ଧୁବର
ଦେଖାଏ ପଥ,

ଯାର ମଙ୍ଗଳ ପରଶ
ସ୍ୱରଗ-ସୁଧା ସରସ
ସ୍ୱରୂପ ତୋର କ୍ରମଶଃ
କରେ ପ୍ରକଟ;
ମଣ୍ଡି ଦିବ୍ୟ ପ୍ରଭାମଣ୍ଡଳେ,
ଚିରନ୍ତନ ଧାମକୁ ଘେନିଯାଏ କୌଶଳେ । ୨୯ ।
ଏମନ୍ତ ପରମବନ୍ଧୁ —
ବର-ବରଣୀ-ଆନନ୍ଦ,
ବଞ୍ଚିତ ତୁ ଭବବନ୍ଧୁ
ତରବୁ କାହିଁ ?
ମୃତ୍ୟୁର ମଙ୍ଗଳମୟୀ
ମରତ ମୂଦେ ଅତ୍ରୟି
ହୁଅ ତୁ ରେ ବିଶ୍ୱଜୟୀ
ସମୟ ଥାଉଁ;
ମୃତ୍ୟୁହିଁ ଅମୃତ ସୋପାନ
ମୃତ୍ୟୁ ହେମପାତ୍ରେ କର ଅମୃତ ପାନ । ୩୦ ।
କାହିଁଛୁ ଜୀବନ ଭଳି
ଅମୃତର ରସାବଳୀ,
ରସଦରେ ପଡ଼େ ଢଳି
ବିରହ ଯାର,
ସେ ରସ ପରିବେଶନ
ନିଃଶେଷେ କରି ସେବନ
ଶେଷକୁ ବିରସ ମନ
ନ କରିବାର;

ଶୂନ୍ୟ ପାଂଶେ ଲୋଭ ନ କର,
ସୁଧା ଲୋଭେ କୁଶାସନ ଗୃହିଲ୍ଲ ପର । ୩୧ ।
ପାନ୍ଥ ଯଥା ପଚ୍ଛବାସୀ
କଚ୍ଛୁକ୍ଷଣ ପାଇଁ ଅସି
ପାନ୍ଥଶାଳେ କ୍ଲାନ୍ତ ନାଶି
ଶରମ ସାର,
ପୁଣି ଉଠି ବାଟେ ବାଟେ
ଗୃହେ ଫେରିବା ଉଚ୍ଛାଟେ
ଧାବଇ ଘାଟେ ଅଘାଟେ
ହୋଇଣ ପାର;
ଚରି ବୁଲି ଯେସନେ ଧେନୁ,
ଫେରଇ ଶୁଣି ଗୋଧନ ବାହୁଡ଼ା ବେଣୁ । ୩୨ ।
ଅବର ହାଟେ ଯେସନ
ଚାହାଣି ଗ୍ରାହକ ଜନ
କାଚ ମୂଲ୍ୟରେ କାଞ୍ଚନ
କିଣିବା ପଛୁ,
ସନ୍ଧ୍ୟାଣୀ ଶିକାରୀ ପ୍ରାୟେ
ବେଳ ଉଣ୍ଡି ବସିଥାଏ
ହାଟ ମଉଳିବା ଯାଏ
ନ ଫେରି ହାଟୁ,
ଲଭି ସୁଲଭରେ ରତନ
ମଣି ମଞ୍ଜୁଷାରେ ରଖେ କରି ଯତନ । ୩୩ ।
ପୋତ ଯଥା ଧାଇଁ ଧାଇଁ
ବନ୍ଦରୁଁ ବନ୍ଦରେ ଯାଇ

ପାଥେୟ୍ୟ ସଂଗ୍ରହ ପାଇଁ
ରହେ ବନ୍ଧରେ,
ତଥା ପ୍ରାଣେ ସଞ୍ଚି ଶିବ
ସୁନ୍ଦର ଯା ଯହିଁ ଥିବ
ସବୁ ଆଦର କରିବ
ନବ ହୃଦରେ;
ପଢ଼ିଲେ ମୃତ୍ୟୁନ ହକରି,
ତାହାହିଁ ହେବ ପଥର ପୁଞ୍ଜି ପସରି । ୩୪ ।
ଜୀବନର ଫଳ ଫୁଲ
ସୁରସେ ଯାହା ଅତୁଳ
ବାଛୁ ବାଛୁ କର ଠୁଳ
ପସରି ଭରି,
ସର୍ବ ବାଞ୍ଛା କଳ୍ପତରୁ
ଜୀବନ ତ ନୁହେ ମରୁ
ସତତ ଏ ଜୀବନରୁଂ
ପୀୟୂଷ ଝରି
ଅନ୍ତଃସ୍ରୋତା ଫଲ୍ଗୁ ପରିପ୍ରାୟେ
ଜୀବନ୍ତ ଜୀବନେ ଧାଏଁ ସୁଧାପ୍ରବାହେ । ୩୫ ।
ସେ ପ୍ରେମ-ସିନ୍ଧୁ ତରଙ୍ଗେ
ସନ୍ତର ସନ୍ତର ରଙ୍ଗେ
ତୋ ପ୍ରାଣବନ୍ଧୁର ସଙ୍ଗେ
ଭେଟିବୁ ଯାଇଁ,
ତହିଁ ମହୋତ୍ସବାନନ୍ଦେ
ମାତଣ ବିବଧ ଛନ୍ଦେ

ବସିବୁ ପରମ ପଦେ
ସ୍ୱସ୍ଥାନ ପାଇ
ରହ ସରହଦରେ ନ ରସି,
ଉଚ୍ଛୁଳବ ମିଳନ-ମଧୁର ସରସୀ । ୩୬ ।

---

# ଭରତପକ୍ଷୀ

( ଅନୁବାଦ )

୧

ହରଷେ ବନ୍ଦିଲ ଆଜ
ଆସ ହେ ବିହଙ୍ଗରାଜ
ଗାଅ ସୁଖେ ପ୍ରାଣଭରି ଅମିୟ ଗାଥା,
ଦୂର ନୀଳ ଗଗନରୁ
ଢାଳିଦିଅ ହୃଦୟରୁ
ସୁଧାର ଲହରୀ ତୋର ମରମ କଥା;
ବିହଙ୍ଗ ତୁ ନ ଯାଏଁ ପ୍ରତେ,
ନନ୍ଦନବିହାରୀ ସୁରସ୍ମରଣ ସତେ ?

୨

ଧରଣୀ ପରସ ଛାଡ଼ି
ଧୀରେ ଧୀରେ ଯାଉ ଉଡ଼ି
କାଞ୍ଚନ କିରଣବୋଳା ନୀରଦ ସର,
ନୀଳକାନ୍ତ ବିହାୟସେ
ଉଡ଼ଣି ବୁଲୁ ରଭସେ
ହେମକାନ୍ତିଜଣା ପକ୍ଷ ମୃଦେ ବିସ୍ତାରି,
ଭାସେଁ ମହାଆନନ୍ଦ-ନୀରେ,
ଉଡ଼ି ବୁଲୁ ଯେବେ ଗୀତ ଗାଇ ରୁହାରେ ।

୩

ଦିନାନ୍ତେ ବୁଡ଼ନ୍ତେ ରବି
ଲୋହିତ ବରଣ ଛବି

ଦଗନ୍ତ ମେଘକଦମ୍ବ ବାରୁଣୀ ପଟେ
ତହିଁ ଭଡ଼ି ବୁଲୁ ରଙ୍ଗେ
ସେ ଛବି ତୋ ନୀଳ ଅଙ୍ଗେ
ପଡ଼ିବାରୁ ସୌଦାମିନୀ ଶୋଭା ପ୍ରକଟେ;
ଗାଉ ଗୀତ ହରଷଭରେ,
ସଦ୍ୟମୁକ୍ତ ଆତ୍ମା ଯଥା ଉଲ୍ଲାସ ସରେ ।

୪

ବୁଡ଼ନ୍ତେ ଲୋକ ଲୋଚନ
ସେ ଶୋଭା ହୁଅଇ ଲୀନ
ତା ସଙ୍ଗେ ତୋ ଛବି ହୁଏ ଦୃଷ୍ଟି ଅତୀତ,
ଅଦୃଶ୍ୟ ହୁଏ ଯେସନେ
ତାରକା ନୀଳ ଗଗନେ
ମଧ୍ୟାହ୍ନ ସଉରକରେ ହେଲେ ମଣ୍ଡିତ;
ତୋ ଲଳିତ ପଞ୍ଚମସ୍ବର
ଶ୍ରବଣେ ଉପୁଜେ ଶତେ ପ୍ରୀତି ଅପାର ।

୫

ତୀକ୍ଷ୍ଣ ଶରଜାଲ ସମ
ତୀକ୍ଷ୍ଣ ବାଲାର୍କ କିରଣ
ବିଶଦବସନା ଉଷା କାମିନୀ କୋଳେ
ରଜତନିଭ ଧବଳ
ସେ ଜ୍ୟୋତିର୍ମୟ ମଣ୍ଡଳ
ନୁହେ ଦୃଶ୍ୟମାନ ଯଥା ନୟନଡୋଳେ
ତଥା ତୋ ସଙ୍ଗୀତ ଶ୍ରବଣେ,
ବିସ୍ତରଇ, ଅଛୁ ପଛି ଦୂରଗଗନେ ।

୬

ଶୈଳ ସିନ୍ଧୁ, ଜଳ ସ୍ଥଳ,
ନିଖିଳ ବାୟୁମଣ୍ଡଳ,
ତବ ସଙ୍ଗୀତଝଙ୍କାରେ    ହୁଏ ମୋହିତ,
ଯେସନ ଶାରଦ ଶଶୀ
ନିର୍ମ୍ମଳ ଗଗନେ ବସି
କୌମୁଦୀ ବରଷି କରେ    ବିଶ୍ୱ ପ୍ଳାବିତ;
ଲୁଚି ତଥା ଦୂର ଗଗନେ,
ଢାଳୁ ଧାରି, ଭସେ ଧରା    ସୁଧାପ୍ଳାବନେ ।

୭

କେ ତୁ ମୋତେ ନାହିଁ ଜଣା
କି ଅବା ଦେବି ତୁଳନା
ତୋ ରୂପ ଗୁଣ ମାଧୁରୀ    ବଚନବଳେ,
ଇନ୍ଦ୍ର କୋଦଣ୍ଡ-ଶବଳ
ନବ ଜୀମୂତ-ପଟଳ-
ଅଙ୍ଗୁ ନୀଃକଣା ଯେବେ ଝରେ ଭୂତଳେ;
ହେଲେହେଁ ତା ସୁକମନୀୟ
ତୋ ଗୀତ ନିର୍ଝର ସଙ୍ଗେ କି ତୁଳନୀୟ ?

୮

କବି ପଥା ଡାଳେ ବସି
କବିତା-ଅମୃତରାଶି,
ବିଦ୍ୟାଲୋକ ବିଭୂଷିତ    ହୃଦ-କନ୍ଦରୁ,
ଉଜାଳି ଏ ଭବ-କାର
ବନ୍ଦେ ଜ୍ଞାନାଲୋକଧାର

ସେ ଅମୃତେ ଜାଗି ଉଠେ ଏ ଭବ-ମରୁ;
ଭଗ୍ନ ଭ୍ରାନ୍ତ ଆଶା ସ୍ୱପନ,
ସମବେଦନାସାଗରେ ହୁଏ ମଗନ ।

୯

ବିରହ ସନ୍ତାପେ ଘାରି
ଯେସନ ନୃପକୁମାରୀ
ନିରଜନେ ବସି ଗାଏ ବିରହଗାଥା,
ବିରହବିଧୁରା ବାଳା
ଶମଇ ହୃଦୟଜ୍ୱାଳା
ଶୀତଳଇ ପ୍ରଣୟର ଦାରୁଣ ବ୍ୟଥା;
ବାମାକେଳି-କୁଞ୍ଜ-ସଦନ,
ଭେଦ ଉଛୁଳି ପଡ଼ଇ ବିରହତାନ ।

୧୦

ଗିରି-ଦ୍ରୋଣୀ ମନୋହର
ଦିଶଇ ସୁନ୍ଦରତର
ମୌକ୍ତିକମଣ୍ଡିତ ହେଲେ ନିଶି ତୁଷାରେ,
ଶ୍ୟାମ ଶସ୍ପେ ତନୁ ସାଜି
ଫୁଟନ୍ତେ କୁସୁମରାଜି
ତରଳ ଲାବଣ୍ୟଧାରା ତହୁଁ ପ୍ରସରେ;
ତହିଁ ପୁଣି ଜ୍ୟୋତିରିଙ୍ଗଣ
ପ୍ରକାଶଇ ଯଥା ହିରଣ୍ମୟ କିରଣ ।

୧୧

ଗୃହସ୍ଥ କଣଳୟ ଦଳେ
ଗୋଲାପ ଯଥା ବିରଳେ

ଲସିତ ରହିଥ ଏ ନିଜ ଶୋଭାସମ୍ପଦେ,
ବହନ୍ତେ ଧୀର ପବନ
ଝଡ଼ି ପଡ଼ଇ ପ୍ରସୂନ
ମହକ ଉଠଇ ବାୟୁ ଗନ୍ଧ ଆମୋଦେ;
ଉନ୍ମାଦକ ସେ ପରିମଳ,
ଗନ୍ଧାମୋଦେ ଗନ୍ଧବହେ କରେ ଅକୁଳ ।

୧୨

ନବୀନ ବରଷାକାଳେ
ପତ୍ର ପୁଷ୍ପ ତୃଣ ଜଳେ
ଟିପି ଟିପି ବରଷାର ମଧୁରଧ୍ୱନି,
ସଦ୍ୟସ୍ନାତ ପୁଷ୍ପଦଳେ
ଅବା ହରିତ ଶାଦ୍ୱଳେ
ଶୋଭେ ହିମବିନ୍ଦୁ ମୋତି ମାଣିକ୍ୟ ଜିଣି
ନାହିଁ କିନ୍ତୁ ମହୀମଣ୍ଡଳେ,
କୋମଳ ମଧୁର ତୋର ସଙ୍ଗୀତ ତୁଲେ ।

୧୩

କି ଆନନ୍ଦେ ହୋଇ ଭୋଳ
ବ୍ରହ୍ମାଣ୍ଡ କରୁ ବିହ୍ୱଳ
ଢାଳିଦେଉ ସୁଲଳିତ ସ୍ୱରତରଙ୍ଗ
ଦ୍ରଣେୟୁ ମଦବ ଗୀତ
ଶୁଣି ଲଭିଅଛୁ ପ୍ରୀତି
ଏ ତୋ ଗୀତସମ ଶୁଣି ନାହିଁ ବିହଙ୍ଗ ?
ସତେ କରେ ଜୁହ୍ୱ, ବିହଙ୍ଗ ।
ଅବା ପକ୍ଷୀ ? କହି କର ସନ୍ଦେହ ଭଙ୍ଗ ।

୧୪

ବିବାହେ ଶୁଭବାଜଣା
ଅବା ବିଜୟ ଘୋଷଣା
ଅସାର ପ୍ରତୀୟମାନ ହୁଏ ମୋଠାରେ,
ଅସାର ଉତ୍ସବ ଗୀତ
ଅସାର ବିଜୟ ସ୍ତୁତ
ଅସାର ସକଳ ତୋର ଗୀତ ତୁଳାରେ।
ସେ ବିଜୟ ଉତ୍ସବାମୋଦେ,
ଅତୃପ୍ତ ବାସନାନଳ ଜ୍ୱଳଇ ହୃଦେ ।

୧୫

କେଉଁ ସୁଧାଝରୁ କହ
ନିଃସରେ ତୋ ସୁଧାମୟ
ସଙ୍ଗୀତ ସତତ ବହେ ଏ ଧରାଧାମେ,
କେଉଁ ସିନ୍ଧୁ କୁଞ୍ଜ ଗିରି
କେଉଁ ନୀଳ ବ୍ୟୋମଶିରି
ନିରେଖି ହେଉଛ ରେ ସଦା ବିହ୍ୱଳ ପ୍ରେମେ।
ଦୁଃଖ କଷ୍ଟ ନ ଜାଣୁ ତୁହି,
କହ ଅବା କାହା ପ୍ରେମେ ହୋଇଛୁ ବାଇ ।

୧୬

ତୋ ବିମଳ ପ୍ରେମରାଶି
ଯେହ୍ନେ ପ୍ରସନ୍ନ ସରସୀ
ଲବେ ମାତ୍ର ନାହିଁ ତହିଁ ଉଦାସୀନତା,
ନାହିଁ ଅବଳତା ତହିଁ
ବିରକ୍ତିର ଛାୟା ନାହିଁ

ସେ ପ୍ରସନ୍ନ ପ୍ରେମସରେ ନାହିଁ ଜଡ଼ତ;
ସେ ବିମଳ ପ୍ରେମ ତୋହର,
ଅତ ସମ୍ଭୋଗେ ନୁହଇ ଅରୁଚକର ।

୧୭

ନିଦ୍ରା ଅବା ଜାଗରଣେ
କି ମହାଜ୍ଞାନ ନୟନେ
ବୁଝିଅଛୁ ମରଣର ତଥ୍ୟ ସମ୍ବାଦ,
ସେ ଗଭୀର ମହାସତ୍ୟ
ମାନବର ସ୍ୱପ୍ନାତୀତ
ଘଟେ ଯହିଁ ମାନବର ଭ୍ରମ ପ୍ରମାଦ;
ନତୁବା ରେ ବିହଙ୍ଗବର !
କାହୁଁ ଲଭନ୍ତୁ ଏ ଗୀତ ସ୍ଫଟିକ ଝର ।

୧୮

ଜନମି ମର୍ତ୍ତ୍ୟମଣ୍ଡଳେ
ଅତୃପ୍ତ ବାସନାନଳେ
ଦହଇ ମାନବ ହୃଦ ଦିବା ରଜନୀ,
ସମ୍ମୁଖେ ନୈରାଶ୍ୟ ଭୟ
ଅତୀତ ଅନୁଶୟମୟ
ନିରନ୍ତର "ନାହିଁ, ନାହିଁ" ହତାଶ ବାଣୀ;
ମୁଖେ ହାସ୍ୟ ହୃଦେ ଯାତନା,
ମଧୁର ସଙ୍ଗୀତେ ପୁଣି ବିଷାଦ କଣା ।

୧୯

ଘୃଣା ଭୀତ ଅହଙ୍କାର
ସମୂଳେ କରି ସଂହାର

ଭୁଲି ଯିବ ଯାଏ ନର ଚିର କ୍ରନ୍ଦନ,
ଭେବେ ଅବା ବିହଙ୍ଗମ
ନିଖିଳ ଆନନ୍ଦଧାମ
ନ ଜାଣେ ହୃଅନ୍ତା ପରି ଚିତ୍ତ ରଞ୍ଜନ;
କବିତା ବାଦନ ମାଧୁରୀ,
ହେଲେ ଜିଣାଇ ତୋ ଗୀତ ବ୍ୟୋମବିହାରୀ !

୨୦

ତୋର ସେ ଆନନ୍ଦକଣା
କିଞ୍ଚିତ କର କରୁଣା
ଦିଅସି ରେ ବିହଙ୍ଗମ ମୋ ପ୍ରାଣେ ଢାଳି,
ପିଇ ସେ ପ୍ରେମ ମଦିରା
ନାଚିଉଠୁ ପ୍ରତି ଶିରା
ପ୍ରାଣୁଁ ଉନ୍ମାଦନୀ ଗୀତ ପଡ଼ୁ ଉଚ୍ଛୁଳି;
ଶୁଣନ୍ତୁ ହୋଇଣ ଚକିତ
ନିଖିଳ ଅବନୀ ମୋର ପ୍ରାଣ ସଙ୍ଗୀତ ।

ଋତୁକେଳି ୨ । ଥା ୧୨ | ୪

**Browning's Pappa's Song**

ପିନ୍ଧଅଛୁ ଧରା ବସନ୍ତଭୂଷା
ପ୍ରାଚୀ ନଭେ ହସେ କନକ ଊଷା
ପ୍ରଭାତ ସମୟ୍ୁ କରଣବୋଲା
ଗିରିକଣ୍ଠୀ ହିମ-ହୀର-କଲ୍ଲୋଳା ।
ପୁଲିନେ ଶାମୁକା ଧୀର ଗମନ,
ଗଗନେ ଭରତ କରେ କୂଜନ;
ବିଶ୍ୱନିୟନ୍ତାର ଶୁଭ ବିଧାନେ
ସର୍ବ ଶୁଭମୟ୍ୁ ଭବ ଭବନେ ।

## ପ୍ରେମଦେବ (ଅନୁବାଦ)

ପ୍ରେମାବେଶେ ଧାଇଁ ଗିରିନିର୍ଝରିଣୀ
ମିଶିଯାଏ ନଦୀ ଅଙ୍ଗେ,
ପ୍ରେମେ ତରଙ୍ଗିଣୀ ଢାଳିଦିଏ ଅଙ୍ଗ
ନୀଳ ଜଳଧି-ତରଙ୍ଗେ ।
ଦକ୍ଷିଣ ଦିଗରୁ ବହଇ ମଳୟ
ନବୀନ ବସନ୍ତ ସଙ୍ଗେ,
ପ୍ରେମେ ଉପବନେ ଲବଙ୍ଗ-ଲତିକା
ନାଚି ଉଠେ ନବରଙ୍ଗେ ।
ବିଶ୍ୱବିଜଙ୍କର ନିଗୂଢ଼ ନିଦେଶେ
ଅଖିଳ ଅବନୀପରେ,
ଯୁଗଳ ମିଳନେ ସର୍ବେ ସନ୍ତରନ୍ତି
ମଧୁର ପ୍ରେମ-ସାଗରେ ।
ଦେଖ ଗିରିବର ନୀଳାକାଶେ କରେ
ନିଗୂଢ଼ ପ୍ରେମେ ଚୁମ୍ବନ,
ତରଙ୍ଗେ ତରଙ୍ଗେ ନୀଳସିନ୍ଧୁଜଳେ
ହୁଅଇ ମଧୁ ମିଳନ ।
କୁସୁମେ କୁସୁମେ ଶୁଭପରିଣୟ
ପ୍ରେମଦେବଙ୍କ ବିଧାନେ,
ଧରଣୀର ଶୁଭ୍ର ବଦନ ଚୁମ୍ବଇ
ରବି କନକ-କିରଣେ ।
ପ୍ରେମେ ଢଳଢଳ ଶାରଦ ଚନ୍ଦ୍ରିକା
ଚୁମ୍ବଇ ନୀଳ ସାଗର,
ଜଳେ ସ୍ଥଳେ ଖେଳେ ପ୍ରେମଦେବଙ୍କର
ବିନୋଦୀ ରୂପ ସୁନ୍ଦର ।

---

# ବୀଣାପାଣି

ମା ଗୋ ବାଣୀ ବୀଣାପାଣି
ନିଖିଳ ମାନସ-କମଳ-ବାସିନୀ
ବାଙ୍ମୟ ଜଗତରାଣୀ ।
ଦୂର ଅତୀତର ପ୍ରଥମ ପ୍ରଭାତେ
ଦିବ୍ୟ ବୀଣା କରେ ଧରି,
ଉଠିଲୁ ଯେତେବେଳେ ନୀରବତାର ସେ
ଯୋଗନିଦ୍ରା ଭଙ୍ଗ କରି;
ସେ ବୀଣାର ଆଦ୍ୟ ମୂର୍ଚ୍ଛନା ଝଙ୍କାରେ
ପ୍ରଣବ-ଓଁକାରମୟ,
ମୂର୍ତ୍ତିମନ୍ତ ହୋଇ ଉଠିଲେ ଚକିତେ
ବେଦଗୀତଗାଥାଚୟ ।
ଆଲୋଡ଼ି ଉଠିଲା ନୀରବତା-ସିନ୍ଧୁ
ନବସ୍ପନ୍ଦନ-ତରଙ୍ଗେ,
ମୃଦୁଳେ ବହିଲା ମଧୁର ମଳୟ
ସହସା ଚମକ-ଭଙ୍ଗେ ।
ମଥିତ ହୋଇଲା ମହାକାଳ ସିନ୍ଧୁ
ଅତି ନିଗୂଢ଼ ମନ୍ଥନେ,
ନିଖିଳର ପ୍ରାଣ ଉଠିଲା ଗୁଞ୍ଜରି
ଅଦ୍‌ଭୁତ ଗୁଞ୍ଜରଣେ ।
ପ୍ରାଣେ ପ୍ରାଣେ ଖେଳିଗଲା ସଙ୍ଗୀତର
ବିଲୋଳ ବୀଚିବଲ୍ଲରୀ,

ନିଖିଳ ଅନ୍ତରେ ଜାଗିଲା ନବୀନ
ସ୍ୱର-ସ୍ପନ୍ଦନ-ମଞ୍ଜରୀ ।
ପଚୂଆଁ ହୋଇଲେ ଉଷାସୁନ୍ଦରୀ ସେ
ମଧୁର ମଙ୍ଗଳଗାନେ,
ପ୍ରକୃତିରାଣୀର ଅଭିଷେକଲୀଳା
ବିଳସିଲା ପ୍ରାଣେ ପ୍ରାଣେ ।
ସେ ଅଦ୍ୟ ପ୍ରଭୃତିଁ ଅଜ୍ୟାଏ ସର୍ବେ
ନିଖିଳ ବ୍ରହ୍ମାଣ୍ଡସାର,
ସେ ଆଦସ୍ୱରଟି ଆଳାପନେ ମାତି
ହେଉଛନ୍ତି ମତୁଆର !
ସେ ଗୀତ-ମୂର୍ଚ୍ଛନା-ଭଙ୍ଗୀ ଅନୁକରି
ନାନା ତାନ ମାନ ଲୟେ
ସାଧୁଛନ୍ତି ସର୍ବେ ଅବହିତଚିତ୍ତେ
ନାନା ଦଶା ବିପର୍ଯ୍ୟୟେ ।
ମାତ୍ର ସେ ବିଲୋଳ ମୂର୍ଚ୍ଛନାରେ ଅଛି
କି ମନୋହର ମାଧୁରୀ,
ତରଙ୍ଗେ ତରଙ୍ଗେ ବିଳସଇ ତାର
କେବଣ କଳାଚାତୁରୀ;
କଣିକାଏ ସୁଦ୍ଧା ଅଜ୍ୟାଏ ତାର
କେହି ନ ପାରିଲେ ସାଧି,
କ୍ଷୁଦ୍ରାଦପି କ୍ଷୁଦ୍ର କୀଟ ପତଙ୍ଗରୁ
ସୁର ନର ଯକ୍ଷ ଆଦି ।
ଯୋଗ୍ୟପାତ୍ର ଜାଣି କେବେ କଦାଚିତେ
ଭକ୍ତଠାରେ ଦୟା ବହି

ସମର୍ପିଲ୍ ଯେବେ ଶ୍ରୀକରର ବୀଣା
ଅନ୍ୟ କରେ ଦୟାମୟୀ;
ତୋହର ପ୍ରସାଦେ ପଦେ ଅଧେ ଗାଇ
ଥକା ପଡ଼ିଲେ ସେ ସିନା !
ଅପଟୁ-ପରଶେ ଛୁଇଁ ଆଉ ତାର କର
ତୋର ସେ ମୋହନୀ ବୀଣା ।
ସେଥିଲାଗି ଆଜ ନିଖିଳ ବ୍ରହ୍ମାଣ୍ଡେ
ଯେ ଯହିଁ ଅଛଇ ରହି
ସର୍ବେ କରୁଛନ୍ତି ତୋ ପଦେ ବିନତି
ବାକ୍ୟ ଦିଅ ମା ବାଙ୍ମୟୀ !
ଦିଅ ଦିଅ ମାଗୋ ଚରମ ପ୍ରକାଶ,
ଦିଅ ମା ପରମ ବାଣୀ,
ତୁ ମା ବାଗ୍‌ବାଦିନୀ ଅଟୁ ଗୋ ନିଖିଳ—
ମାନସ-ବୈକୁଣ୍ଠ-ରାଣୀ
ତୋ ପଦ ପରଶି ନିଖିଳ-ହୃଦୟ—
ସରସିଜ ଶତଦଳ
ଚରମ ପରମ ବିକାଶ-ବିଭବେ
ହୋଇ ଉଠୁ ଉର୍ଜସ୍ୱଳ ।
କେବେ ଭବିଷ୍ୟତେ ଆସିବ ସେ ଦିନ
ଯେବେ ମା ବୀଣାବାଦିନୀ,
ଚରାଚର କଣ୍ଠୁଁ ଉଠିବଟି ବାଜି
ଏ ତୋ ଅଜଣା ରାଗିଣୀ,
ସରବେ ଗାଇବେ ମିଳି ପରସ୍ପର
ସଙ୍ଗତେ ସ୍ୱର ମିଳାଇ

ପ୍ରକୃତ ହୋଇବ ସେ ଗୀତପ୍ଲାବନେ
ମହାଗୀତୋଚ୍ଛ୍ୱାସମୟୀ ।
ସର୍ବେ ହୋଇଯିବେ ଏକାକାର ସେହି
ସଙ୍ଗୀତସାଗରେ ବୁଡ଼ି,
ମହା ଚେତନାରେ ଲଭି ସଞ୍ଜୀବନୀ
ନିଜ କ୍ଷୁଦ୍ର ସତ୍ତା ଛୁଡ଼ି ।
ଏ ବିଶ୍ୱଲୀଳାର ନିଗୂଢ଼ ରହସ୍ୟ
ହୋଇଯିବ ଉଦ୍‌ଘାଟିତ,
ପ୍ଲାବି ଅନ୍ଧସନ୍ଧ ସଙ୍ଗୀତର ଧାରା
ହେଲେ ହେବ ପ୍ରବାହିତ ।
ସଂଯମନୀ ପୁରୀ ଭାସିଯିବ ସେହି
ଅଳକାନନ୍ଦା ପ୍ରବାହେ,
ଏ ବ୍ରହ୍ମାଣ୍ଡଭାଣ୍ଡ ହୋଇବ ବିଦୀର୍ଣ୍ଣ
ଜୀର୍ଣ୍ଣ ମୃତ୍‌କୁଣ୍ଡିକା ପ୍ରାୟେ ।
ବହୁକୂଟ ଗ୍ରନ୍ଥି-ଶୃଙ୍ଖଳରେ ଅତି
ନିଗୂଢ଼େ ହୋଇଛି ଛନ୍ଦା,
ଅତି ଅଦ୍‌ଭୁତ ରହସ୍ୟମୟୀ ଏ
ବ୍ରହ୍ମାଣ୍ଡ ଗୋଲକଧନ୍ଦା ।
ଗ୍ରନ୍ଥି ଫିଟି, ଫିଟିଯିବ ଏ ରହସ୍ୟ
ବିଶ୍ୱଲୀଳା ପ୍ରହେଳୀର,
ବିଶ୍ୱଲୀଳା ଅଭିନୟରେ ପଡ଼ିବ
ଯବନିକା ସମାପ୍ତିର ।
ସେହି ଶେଷ ଗୀତ ସେ ଅନ୍ତିମ ସ୍ୱର
ସାଧନେ ମନ ବଳାଇ

ନିଖିଳ ଭୁବନ ସାଧୁଛଇ କଣ
ମା ! ତୋର ଚରଣ ଧ୍ୟାୟି ।
ଗାୟକ ଯେକାଳେ ବସି ମନସୁଖେ
ସ୍ୱରଟିଏ ଆଳାପଇ,
ନାନା ଭାବ ଭଙ୍ଗୀ ତାନ ମାନ ଲୟେ
ରସପ୍ରବାହ ବହଇ ।
ବିଲୋଳ ମୂର୍ଚ୍ଛନା ଖେଳି ବୁଲେ କେତେ
ବିନୋଦ ରସହିଲ୍ଲୋଳେ,
ସ୍ୱର ତାନ ଲୟ ସାମଞ୍ଜସ୍ୟ ସାଧି
ବିବିଧ ବୈଚିତ୍ର୍ୟ ଢ଼ାଳେ ।
କଳା ସଜ୍ଜିତ, ରସ ପରିଣତ,
ନୈପୁଣ୍ୟ ତରଙ୍ଗେ ଭାସି
ସରସ ବିଗ୍ରହେ ପରିଶେଷେ ସ୍ୱର
ମୂର୍ତ୍ତିମାନ ହୁଏ ଆସି ।
ତଥା ଦିନେ ଏ ତୋ ବିଶ୍ୱମ୍ଭର ସ୍ୱର
ଯାର କ୍ଷୀଣ ପ୍ରତିଧ୍ୱନି
ନିଖିଳ ବିଶ୍ୱର ଅନ୍ତରେ ଅନ୍ତରେ
ବାଜଇ ଦିବା ରଜନୀ,
ପ୍ରତିକଣ୍ଠେ ହୋଇ ଉଠିବ ମୁଖର
ଶେଷେ ହୋଇ ପୂର୍ଣ୍ଣ ତାନ,
ମହା ତ୍ରିକାଶର ଜୟ ଜୟ ରୋଳେ
ବିଶ୍ୱ ହେବ କମ୍ପମାନ ।
ସେ ଚରମ ଲକ୍ଷ୍ୟେ ସର୍ବେ ଦେଇ ମନ
ସେ ଶୁଭଦିନ ଆଶାରେ

ସାଧୁଛନ୍ତି, ସେହି ଅଦମ ସ୍ୱରଟି
ଯେ ଯା ଶକ୍ତି ଅନୁସାରେ ।
ତୋହ କରୁଣାର ତାରତମ୍ୟେ ସିନା
କେହି କ୍ଷମ କେ ଅକ୍ଷମ,
ତୋହର ପ୍ରସାଦେ ବିଶାରଦ କେହି
କେହି ବା ଅଧମାଧମ ।
ସର୍ବେ ତେଣୁ ଅଳ୍ପ ଊଣା ଅଧିକରେ
ଅଧିକାର ଅନୁଯାୟୀ
ମାତଛନ୍ତି ସେହି ସ୍ୱର ଅଳାପନେ
ତବ ଶ୍ରୀଚରଣ ଧ୍ୟାୟି ।
ସେହି ସାହସରେ ସିନା ଅଜ ଏ ମୋ
ଜୀର୍ଣ୍ଣ ଖଞ୍ଜଣୀଟି ଘେନି
ଭଗ୍ନକଣ୍ଠ ଛିନ୍ନ ଶସ୍ୱରେ ବସିଛୁ
ଧୂଳି ସେ ଚରଣ ବେନି ।
ମାଗୁ ନାହିଁ ମାଗୋ ଅଢ଼େଇ ଦିନିଆ
ଘର ଯଶର ଶିରପା,
ଜାଣିଛୁ ମା ତାକୁ କେତେ ହଟେ କାଟେ
କୁଟ କାଳ ଅଶରପା ।
ଶୀର୍ଣ୍ଣ କଣ୍ଠ ଜୀର୍ଣ୍ଣ ଖଞ୍ଜଣୀଟି ଘେନି
ତବ ପଦପ୍ରାନ୍ତେ ବସି
ଯଶରଙ୍କ ମୁହିଁ ନୁହେଁ ମାଗୋ ନୁହେଁ
ପଦଗୌରବ-ଲାଳସୀ ।
ତୋ ପଦ ସେବା ମୁଁ କଥା ପଦକରେ
ଯେ ପଦେ ବସିବ ଯାଇ,

ସମ୍ପଦେ ବିପଦେ ସେ ପଦରୁ କେହି
ଅପଦସ୍ଥ ହୁଏ ନାହିଁ ।
ସେ ପଦ ଲାଗି ମୁଁ ତୋର ପଦଛାୟା
ତଳେ ବାନ୍ଧିଅଛି ବସା,
ଅଯୋଗ୍ୟ ସନ୍ତାନେ ଜନନୀର ସ୍ନେହ
ଅଧିକ, ତେଣୁ ଭରସା ।
କିଛିହିଁ ନାହିଁ ମୋ କଣ୍ଠତିବ୍ରର ବଳ
ତୁ କି ତା ନାହୁଁ ମା ଜାଣି ,
ମୋ ଖଞ୍ଜଣୀ ସଦା ବାଜଇ ବେତାଳେ
ତାନ ମାନ ଅବମାନି ।
ଏକ ଗ୍ରାମେ ବାନ୍ଧି ଖଞ୍ଜଣୀଟି କ୍ରମେ
ନିମ୍ନଗ୍ରାମେ ପଡ଼େ ଖସି,
ଏକ ଗାଇବାକୁ ଅନ୍ୟ ଦଏଁ ଗାଇ
ଶୁଷ୍କ କଣ୍ଠ ଯାଏ ବସି ।
ହାନି ଲଭ ସବୁ ପୂରାଇ ଗାଇ ତୁ
ଶୁଦ୍ଧାଶୁଦ୍ଧ ନ ବିଗୁର,
ଖଣ୍ଡ ଖଞ୍ଜ ସ୍ୱର ପୂର୍ଣ୍ଣାଙ୍ଗ ହୋଇ ତୋ
ବୀଣାରେ ଉଠେ ଝଙ୍କାର ।
ଏହି ଭରସାରେ ମନ ବଳାଇଛି
ଚରଣପୂଜାକୁ ତୋର,
ସପ୍ତ ପଞ୍ଚ ସଙ୍ଗେ ସମକକ୍ଷ ହେବ
ନତୁବା କି ଅଛି ମୋର ?
କେତେ ଆଶା କେତେ ଭାବନା କେତେ ବା
ରାଗ ରାଗିଣୀନିକର,

ଫୁଟି ଅଯତନେ ମଉଳ ପଡ଼ୁଛୁ
ହୃଦନକୁଞ୍ଜେ ମୋହର ।
କଢ଼ୀରୁ ଝଡ଼ୁଛୁ କେହୁ ପୁଣି ଫୁଟୁ ଫୁଟୁ
ପଡ଼ି ଅଛୁ ଝଡ଼ି,
ବୃନ୍ତେ ଝାଉଁଳ କେ ପଡ଼ୁଛୁ ବା ରସ-
ଅଭାବୁଁ ନ ପାର ବଢ଼ି ।
କେହୁ ପୁଣି ଭଇଁ ଲଭୁଛୁ ଭଷଣ
ଭାଷା ସମାଶ୍ରୟହୀନା,
କେହୁ କେହୁ ପୁଣି ଭୃଣେ ନାଶ ଗଲେ
ଅଙ୍ଗସଉଷ୍ଠବ ବିନା ।
ମୋହର ଅଜ୍ଞାତ ମୋର ଅବଜ୍ଞାତ
ମୋର ଅବ୍ୟକ୍ତ ଏମାନ
ମୃତ୍ୟୁସଞ୍ଜୀବନୀ ବୀଣାରେ ତୋହର
ଧ୍ୱନେ ହେବେ ମୂର୍ତ୍ତିମାନ ।
ଅଜଣା ଅଶୁଣା ବାଟବଣା ପୁଣି
ଖର୍ବ ଖଞ୍ଜ ଅଙ୍ଗହୀନ
ଦୂର ଅତୀତର ବିସ୍ମୃତି ଗରଭେ
ହୋଇଗଲେଣି ଯେ ଲୀନ,
ମା ତୋର ବୀଣାର ତାନେ ତାନେ ଧ୍ୱନେ
ସରବେ ଉଠିବେ ବାଜ
ସୁଡଳ ସୁନ୍ଦର ସରସ ବିଗ୍ରହେ
ସୌନ୍ଦର୍ଯ୍ୟବିଭବେ ସାଜ ।
ବାଜ ଉଠେ ତହିଁ ନଖିଳ ବିଶ୍ୱର
ଅନ୍ତରର ଗୁଢ଼ କଥା

ବାଜୁ ନ ଥିବ କି ତହିଁ ମାଗୋ ଏ ମୋ
କ୍ଷୁଦ୍ର ହୃଦତିର ବ୍ୟଥା ।
ଅଯୋଗ୍ୟ ପୁତ୍ରର ହୃତସରବସ୍ୱ
ସାଇତ ସମ୍ପାଦ କର
ଯତ୍ନେ ରଖିବାକୁ କେ ଅଛୁ ଜଗତେ
ସ୍ନେହମୟୀ ମାତା ପର ।
ଅନ୍ୟୂନ ଚୌରଶି ଲକ୍ଷ ମହାପଥେ
ଭ୍ରମି ଲକ୍ଷ୍ୟହୀନ ପ୍ରାୟେ,
କେତେ କଛୁ କାହିଁ ଛାଡ଼ି ନ ଆସିଛୁ
ସବାଦ୍ୟରୁ ଅଭ୍ୟାସେ ।
ପୁଣି ଯାହା କଛୁ ଅଣିଛୁ ସଙ୍ଗତେ
କେ କାହିଁ ପଡ଼ିଛୁ ଯାଇ
ଲୁଣ୍ଠିତ ଗଞ୍ଜିତ ଏମାନ ମୋହର
ଦେ' ତୋ ବୀଣାରେ ବଜାଇ ।
ବାଜି ଉଠୁ ସବୁ ସୁପ୍ତ, ଗୁପ୍ତ, ଲୁପ୍ତ
ଅବ୍ୟକ୍ତ ଯା-କଛି ମୋର
ଯୋଡ଼ା ହେବ ଯେବେ ସେ ସକଳ ମୋର
ଚରଣପୂଜାକୁ ତୋର ।
ବଢ଼ପୂଜାଡାକ ପଡ଼ିବ ଯେକାଳେ
କ୍ଷେତ୍ରର ସେ ଶୁଭ ଦିନେ,
ଷୋଡ଼ଶୋପଚାରେ ସଜାଡ଼ ଦେବ କେ
ଅର୍ଘ୍ୟଥାଳୀ ମା ତୋ ଷ୍ଣେ ।
ଲବେ ମାତ୍ର ତହିଁ ହେଲେ ମା ବାଙ୍ମୟୀ
ତବ ଶୁଭ ଅଧିଷ୍ଠାନ,

ଅଚ୍ଛିଦ୍ର ହୋଇବ ଷୋଳପୂଜା ଯାକ
ପୂର୍ଣ୍ଣ ହେବ ଅନୁଷ୍ଠାନ ।
ହାବେଳି ଯେସନ ଘୋର ତମୋମୟ
ଉଆଁସ ଅକାଶେ ଉଠି,
ନାନା ବଇଚତ୍ରୀମୟୀ ବର୍ତ୍ତିଛଟା
ଘଟାରେ ଉଠଇ ଫୁଟି ।
ଅବର ଯେମନ୍ତ ଜନମନଲୋଭା
ହେଲେହେଁ ସୁମନସ୍ତବ,
ଶତଗୁଣ ବଢ଼ି ଉଠଇ ମାହାତ୍ମ୍ୟ
ଦେବ ଅଙ୍ଗସଙ୍ଗ ଲଭି;
ଧନ ଜନ ଶକ୍ତି ମାନବଭୂଷଣ
ହେଲେହେଁ ଭବେ ଯେସନେ,
ଦବ୍ୟ ମହିମାରେ ହୁଅଇ ମଣ୍ଡିତ
ପର କଷଣ ହରଣେ;
ତେସନ ଜୀବନେ ଯାହା ମୁଁ ଗାଇଛି
ଘେନି ଏ ଜୀର୍ଣ୍ଣ ଖଞ୍ଜଣୀ,
ଅବର ଗାଇବ ବୋଲି ଯା ଛଡ଼ିଛି
ମୋର ସାଧ୍ୟାତୀତ ମଣି;
ଏମାନେ ସବୁ ତୋ ମୃତସଞ୍ଜୀବନୀ
କରୁଣାକଣିକା ଲଭି,
ତୋ ବୀଣାଝଙ୍କାରେ ଜାଗିଣ ଉଠିବେ
ନବପ୍ରାଣ ଅନୁଭବି ।
ଅଚ୍ଛିଦ୍ର ହୋଇବ ଜୀବନେ ମୋହର
ଯାହା କଛି ଅନୁଷ୍ଠାନ,

ଲଭେ ମାନବ ତହିଁ ହେଲେ ମାତ ତୋର
ଚରଣର ଅଧିଷ୍ଠାନ ।
ଏହି ଭରସାରେ ଗାଉଛୁ ଆଜ ମା
ଜୟ ଜୟ ବୀଣାପାଣି,
ଜୟ ଜୟ ତୋର ସଞ୍ଜୀବନୀ ବୀଣା,
ଜୟ ବାଣୀ ବିଶ୍ୱରାଣୀ ।

---

# ଅଶୋକ ବନେ ସୀତା ଓ ସରମା

## କଳହଂସ କେଦାର

ଅଶୋକବନେ ଯେବେ ଜାନକୀ ସତୀ
ବନ୍ଦୀଭାବେ କରୁଥିଲେ ବସତି
ହୋଇ ଦାନବ-ନାରୀ-ପ୍ରହରୀବୃତା
ଶାରଦ ଶଶୀ ଯେହ୍ନେ ଘନ-ଆବୃତା । ୧ ।
ସୁରମା ଦେବୀ ବିଭୀଷଣ-ପ୍ରେୟସୀ
ନିତ୍ୟ ପ୍ରଭାତେ କାରାମନ୍ଦିରେ ପଶି
ସେବୁଣ ଥିଲେ ନର୍ମ୍ମସଖୀ ପରାୟେ
ସର୍ବ୍ବ-ଶର୍ମ୍ମଦ ରାମ-ରମଣୀ ପାୟେ । ୨ ।
ବିଶ୍ୱବନ୍ଦିତ ସେହି ପଦାରବିନ୍ଦେ
(ଲାବଣ୍ୟ ଯାହା କୋଟି ପଦ୍ମିନୀ ନିନ୍ଦେ)
ନିତି ବନ୍ଦି ସରମା ପରମାନନ୍ଦେ
ଦେବୀଙ୍କି ତୋଷୁଥିଲେ ନାନା ପ୍ରବନ୍ଧେ । ୩ ।
ସତୀଙ୍କ ମର୍ମ୍ମବ୍ୟଥା ମରମେ ଜାଣି
ଭାଷୁଣଥିଲେ ନାନା ସାନ୍ତ୍ୱନା ବାଣୀ
ଅତି ମଞ୍ଜୁଭାଷିଣୀ ଥିଲେ ସରମା
ତା ବାକ୍ୟେ ମୋହୁଥିଲେ ଶ୍ରୀରାମରାମା । ୪ ।
ସେବୁଣ ଥିଲେହେଁ ସେ ସେବକୀ ପରି
ସଙ୍ଗିନୀସମା ତାକୁ ବନ୍ଧୁ-ସୁନ୍ଦରୀ
ପରଗୃହିକା-ଭାବ ନ ଘେନି ତଲେ
ପରିଜନ ପରାୟେ ମଣୁଣଥିଲେ । ୫ ।

ମହତ ଜନଙ୍କର ଏ ରୀତ ସିନା
କାହିଁ ନମ୍ରତା ଭବ ମହତ୍ତ୍ୱ ବିନା ?
ରକ୍ଷଃକୁଳକାମିନୀ ଦାନବବଧୂ
ଆଜ ଜନକଜେମା-ପରାଣବନ୍ଧୁ । ୬ ।
ଧନେ ସରମା ଆସି ଅତ ସାଦରେ
ନମନ୍ତେ ସତୀଙ୍କର ପଦ୍ମପଯ଼ରେ
ସସ୍ନେହେ ସଜନୀକ ସରୋଜମୁଖୀ
କଲେକ ଅଲିଙ୍ଗନ ହୋଇଣ ସୁଖୀ । ୭ ।
କହେ ସରମା 'ଶୁଣ ବିଳମ୍ବ ହେତୁ'—
ତୋ ଭାଗ୍ୟାକାଶେ ଥିଲ ଯେ ଧୂମକେତୁ,
ସେ ଇନ୍ଦ୍ରଜିତ ଆଜ ଗଲାଟି ଅସ୍ତେ
ଦେବପ୍ରତିମ ତୋର ଦେବରହସ୍ତେ । ୮
ତୋ ଭାଗ୍ୟାକାଶ ଦେବ ! ହେଲା ନିର୍ମଳ
ଅଶାବ୍ରତତୀ ଧରିଲଣି ସୁଫଳ
ଶତ୍ରୁସଂହାର ବୀର ଧନୁକହସ୍ତ
ତବ ଉଦ୍ଧାରପଥ କଲେ ପ୍ରଶସ୍ତ । ୯ ।
ଶୁଣି ପ୍ରସନ୍ନା ହେଲେ ଯୋଜନଗନ୍ଧା
ପ୍ରସନ୍ନନୀର ଯେସନେ ଅଲକାନନ୍ଦା,
କହନ୍ତି "ପ୍ରିୟମ୍ବଦା, ସଖି ତୁ ମୋର
ଶରମଧୁବର୍ଷିଣୀ ରସନା ତୋର । ୧୦ ।
ସଦା ତୁ ସୁସମ୍ବାଦ ବହ ପ୍ରେୟସୀ
ମୋ ଦୁଃଖଯାମିନୀର ଶୁଭ-ଉଷସୀ
ପଶଏ ଉଇଁ ମୋର ଜୀବନାକାଶେ
ନିରତ ଜଡ଼ା ଶୋକତମିର ନାଶେ । ୧୧ ।

ତୋ ସମା ଏଥି ମୋର ହିତକାମିନୀ
କେ ଅଛୁ କହ ଏଥି ଦୈତ୍ୟକାମିନୀ
ତୋ ସ୍ନେହଗୁଣେ ବନ୍ଦ ହୋଇ ସଙ୍ଗିନୀ
ରହିଲି ଶରଣୀ ମୁଁ ଅଭାଗିନୀ । ୧୨ ।
ସତ୍ୟ ଯା କହିଲୁ ମୋ ଦେବରଗୁଣ
ଅତୀବ ବିଚକ୍ଷଣ, ରଣେ ନିପୁଣ,
ଅଗ୍ରଜ ଅନୁଗତ ଭ୍ରାତୃବତ୍ସଳ
ଏମନ୍ତ ଭ୍ରାତା ଧରିତଳେ ବିରଳ । ୧୩ ।
ଯୁଝିଲେ ବେନି ଭ୍ରାତା ହୋଇ ମିଳିତ
ପଲକେ ବଂଶଭୁଜ ହେବ ପତିତ,
ଝଡ଼ପଡ଼ନ୍ତ ଯଥା ଋତୁ-ସ୍ଖଳନେ
ମହା 'ମହାଳ' ତରୁ ପ୍ରଶାଖାଗଣେ । ୧୪ ।
କି ବଖାଣିବି ଗୁଣ ସଉମିତ୍ରିର
ଯେମନ୍ତ ଧନୁର୍ଦ୍ଧର ତେମନ୍ତ ଧୀର
ଧରାଧର ଧର୍ଷଇ ଯା ବାଣେ ହାସେ
ସେ ପୁଣି ଦ୍ରମଣିଳା ଅଗ୍ରଜପାଶେ । ୧୫ ।
ଏମନ୍ତ ଶୌର୍ଯ୍ୟ-ଧୈର୍ଯ୍ୟ-ସୁସମନ୍ୱୟ
ପବନ ସୁବିଶାଳ ଯାର ହୃଦୟ
ତାଦୃଶ ବୀରଭ୍ରାତା ସହାୟ ଯାର
ସେ କି ଡରନ୍ତ ସଖି ରାବଣେ ଛାର । ୧୬ ।
ଏହି ଆଶାରେ ସିନା ହୋଇ ଆଶାୟୀ
ଜୀବନ୍ମୃତ ପରାୟେ ଅଛୁ ଅନାଇ
ମୋ ନବ ଜଳଧର ଉଇଁବେ ସତେ
ସ୍ଫୁରିବ ବିଜୁଳୀ ସମ ଭ୍ରାତା ସଙ୍ଗତେ । ୧୭ ।

ସାନନ୍ଦେ ଭଷି ମନ୍ଦ୍ର ମଧୁର ବାଣୀ
ଅସରନ୍ତୀଆ ସାରୁଁ ବନ୍ଦୁ ପ୍ରଦାନ
ଶମିବେ ଭୃଙ୍ଗକୀର ପ୍ରାଣ ପିପାସା
ଅଭାଗୀର ପୂରିବ ସକଳ ଆଶା । ୧୮
ଏହି ଆଶାରେ ସିନା ଜୀବନ ଧରି
ରହିଛି ଦୁଃଖଭାର ବହନ କରି,
ନଚେତ୍‌ବା ଏ ପରାଣେ କି ଅଛି ଫଳ,
ହରାଇଣ ସେ ପଦ୍ମପାଦଯୁଗଳ । ୧୯ ।
ଏମନ୍ତ ଭଷି ହର୍ଷବିଷାଦେ ଅତି
ପୂର୍ବ ବୃତ୍ତାନ୍ତ ସ୍ମରି କାନ୍ଦିଲେ ସତୀ
ସତୀଦୁଃଖେ ସରମା ହୋଇ ଦୁଃଖିନୀ
ସାନ୍ତ୍ୱନା ଦେଲେ କଳକଣ୍ଠଭଷିଣୀ । ୨୦

---

## ରସକୁଲ୍ୟା—ବୃତ୍ତ

୧

କେତେ କ୍ଷଣେ ଦେବୀ ଲଭି ଆଶ୍ୱାସ
କହିଲେକ ତେଜି ଦୀର୍ଘ ନିଃଶ୍ୱାସ
ମନ୍ଦଗ୍ରହଦୋଷେ ସିନା ସଙ୍କଟ !
ନାକେ ହେଲି ନିଜ ଅନ୍ନଧାତକୀ
ସ୍ୱ-ସୁଖ-ସ୍ୱର୍ଣ୍ଣ-ବ୍ରତତୀ ଯେ
ମତଛନ୍ନ ଜନ ପ୍ରାୟେ ନାକେ ସଙ୍ଗି
ସମୂଳେ ଦେଲି କରତ ଯେ । ୧ ।

୨

ମିଥ୍ୟା ଅମଙ୍ଗଳ ଆଶଙ୍କା କରି
ଅଧୀର ନ ହୋଇ ଯଦ, ସୁନ୍ଦରି !
ଅର୍ଯ୍ୟଙ୍କ ପବନ ଆଜ୍ଞା ଲଙ୍ଘନେ
ବଳାଇ ନ ଥାନ୍ତି ଧୀର ଲକ୍ଷ୍ମଣେ
ତେବେ କି ପଡ଼ି ବିପଦେ ଗୋ
ଭସାଇଣ ଥାନ୍ତି ଅର୍ଯ୍ୟେ ଅର୍ଯ୍ୟାନୁଜେ
ଦୁସ୍ତର ଏ ଦୁଃଖନଦେ ଗୋ । ୨ ।

୩

ବନସ୍ଥିର ଖଣି ବୀରଲଲାମ
ସାରଳ୍ୟର ଅବା କୈବଲ୍ୟଧାମ
ସୁଖୈଶ୍ୱର୍ଯ୍ୟ ଭୋଗେ ସଦା ନିସ୍ପୃହ
ଅଗ୍ରଜ ତୋଷଣେ କି କାମଦୁହ

ଏମନ୍ତ ଧୀର ଲକ୍ଷ୍ମଣେ
ଦୁରଭିସନ୍ଧିର ଦୋଷାରୋପ କରି
କି ବ୍ୟଥା ନ ଦେଲି ପ୍ରାଣେ ରେ । ୩
ଏମନ୍ତ ଅନାର୍ଯ୍ୟୋଚିତବଚନା
ଛୁଟି ନ ପଡ଼ିଲା କିପାଁ ରସନା
ଏ ତ ସଙ୍ଗିନୀ ମୋ ଗ୍ରହବୈଗୁଣ୍ୟ
ହିତାହିତଜ୍ଞାନେ ହେଲି ଯା ଶୂନ୍ୟ
କହିଲି କଟୁ ବଚନ ରେ
ଆଜ କରୁଛଇଁ ସେ ପାପର ସିନା
ଉପଯୁକ୍ତ ଫଳ ଭୁଞ୍ଜନ ରେ । ୪ ।
ଅଶୁମାନ ତହିଁ ବିମୁଖ ନୋହି
ନିଜଗୁଣେ ମନୁ ମୋ ଦୋଷ ଧୋଇ
ଥିଲେହେଁ ବିରକ୍ତ ନୋହି ମୋ ପ୍ରତି
ହେଲେ ପୁଣି ମୋର ଉଦ୍ଧାର ବ୍ରତୀ
ଏମନ୍ତ ଉଦାର ଚେତା ରେ
କାହିଁ ଦେଖିଛି କି ନିଖିଳ ବ୍ରହ୍ମାଣ୍ଡେ
ବିନା ଇନ୍ଦ୍ରଜିତ-ଜେତା ରେ । ୫ ।
ଏମନ୍ତ ଦେବର ଭ୍ରାତୃଭକତ
ଜନ୍ମେ ଜନ୍ମେ ମୋତେ ହେଉ ପ୍ରାପତ,
(ମାନ) ମୋ ସମ ପାପିନୀ ଅଗ୍ରଜଜାୟା
ତାଙ୍କୁ ନ ଘଟାନ୍ତୁ ଶ୍ରୀ ମହାମାୟା
ଏତିକି ମୋର ପ୍ରାର୍ଥନା ରେ,
ଏହା କହି ଦେବୀ ସରମାର ପାଶେ
ହୋଇଲେ ଖେଦୁଦ୍ୟମାନା ଯେ । ୬ ।

ଅନୁତାପେ ଧୀର ହୋଇ ସୁନ୍ଦରୀ
ଲକ୍ଷ୍ମଣଙ୍କ ଗୁଣମାନ ସୁମରି
ବାହୁନି କାନ୍ଦିଲେ ହୋଇ ବିକଳ
ସଘନେ ଝରିଲା ଲୋତକଜଳ
ଉଠିଲା କରୁଣ ତାନ ଯେ,
ପ୍ରତେ ହେଲା ମନେ ଅଶୋକକାନନେ
ଶୋକ ହେଲା ମୂର୍ତ୍ତିମାନ ଯେ । ୭ ।

ସତୀଙ୍କ ବିଳାପେ ଦୀର୍ଘ ନିଶ୍ୱାସେ
ଧ୍ୱସ୍ତ ଲଙ୍କାପୁର ରାଜଭଅସେ
ଟଳିଲା ଅସ୍ଥାନ ରାଜଲକ୍ଷ୍ମୀର
ଚମକି ଚଞ୍ଚଳା ହେଲେ ଅସ୍ଥିର
ସତୀଶୋକ ହୃଦେ ଧରି ଯେ,
ଅମଙ୍ଗଳ ଭୟେ କ୍ଷୁବ୍ଧ ହେଲେ ମନେ
ଶୁଭଙ୍କରୀ ବିଶ୍ୱମ୍ଭରୀ ଯେ । ୮ ।

ଛନକା ପଶିଲା ପ୍ରକୃତି ଅଙ୍ଗେ
ଶିହରିଲା ତନୁ ରୋମାଞ୍ଚ ସଙ୍ଗେ,
ମାର୍ଗଶୀର୍ଷେ ଶସ୍ୟଶୀର୍ଷ କମ୍ପାଇ
ବହନ୍ତେ ସମୀର ଶିଶିରବାହୀ
ଶ୍ୟାମଳ ଶାଳୀ କେଦାରେ ଯେ,
ତରଙ୍ଗେ ତରଙ୍ଗେ ରୋମାଞ୍ଚ-ସଞ୍ଚାର
ହୁଏ ଯେବଣ ପ୍ରକାରେ ଯେ । ୯ ।

ଜଳନିଧି-ଚଳ-ମହୋର୍ମ୍ମିଘୋଷେ
ମୁଖରିତ-ଦଗ୍ଧ-ସମୀର-କୋଷେ,

ମୂର୍ତ୍ତିମତୀ ହେଲା ଅଶୁଭ୍ରଶଙ୍କା
ଅଭିଶପ୍ତ କରି କନକ ଲଙ୍କା
ସୁନୀଳ ଅମ୍ବରଭାଲେ ଯେ,
ବଧୂଙ୍କ ବଧୂରି ଦେଖି ତେଜୋନିଧି
ଲୁଚିଲେ ଜଳଦଜାଲେ ଯେ ।୧୦।
ସୁଭୂଷଣପଟୁ ପଞ୍ଚସଙ୍ଗିନୀ
ସଦା ସାଧ୍ୱୀ ସେବା-ଅନୁରାଗିଣୀ
ସରାଗେ ସରମା ବସନାଞ୍ଚଳେ
ନୟନୁ ଅଶ୍ରୁଧାରି ପୋଛୁ ଚଞ୍ଚଳେ
କହିଲେ ମଧୁବଚନ ଯେ,
ରାହୁଗ୍ରସ୍ତ-ଶଶିକଳା ପ୍ରାୟେ ଫିକା-
ଦିଶିଲା ବଧୂବଦନ ଯେ । ୧୧ ।
ପୂର୍ଣ୍ଣିମା ନିଶାନ୍ତେ ଅରୁଣୋଦୟେ
ଶଶୀ ଯଥା ପ୍ରଭାବଭବ କ୍ଷୟେ
ପାଣ୍ଡୁର ଦିଶଇ କାଳିମା ଭଜି
ମୟୂଖ ମହିମା ହେଲେ ବରଜି
ତେସନ ହେଲା ପାଣ୍ଡୁର ଯେ,
ଶାରଦ ଚନ୍ଦ୍ରମାବଦନ ସେ ବଧୂ-
ବଦନୀ ରଘୁବଧୂର ଯେ । ୧୨ ।

---

# ଶ୍ରୀଧାମ ପୁରୀର ବଡ଼ଦେଉଳରୁ ପ୍ରସ୍ତରସ୍ଖଳନ ଉପଲକ୍ଷରେ

ବିଶାଳ ପ୍ରସ୍ତର ଏକ ଖସିଲାକ ଅଙ୍କ
ନୀଳାଚଳେ ବଡ ଦେଉଳରୁ,
ଭାଙ୍ଗି ଚୂନା ହେଲା ପୂଜାଥାଳୀ ଦିଅଙ୍କର
ଅମୃତମଣୋହି କରୁଁ କରୁଁ ।
ପୂଜାପଣ୍ଡା ପଡ଼ି ଅଛି ଲୁଟିଅଏ କେହି
ବଡ଼ଭାଗ୍ୟେ ନ ଥିଲେ ସେଠାବେ,
ଧୂପ ନ ଉଠିବାଯାଏ ଚନ୍ଦନ-ଅର୍ଗଲେ
ଯାତ୍ରୀଏ ତ ନ ଥାନ୍ତି ସ୍ୱଭାବେ ।
ଏ ବଡ଼ ଅଦ୍‌ଭୁତକଥା ଅବିରତ ଯହିଁ
ଲାଗିଅଛି ଜନତା ଗହଳ,
କେହି ନ ଥିବା ବେଳେହିଁ ଖସିଲା ପଥର;
ଏଥି କିବା ଦଇବ କୌଶଳ ।
ଅତି ଆକସ୍ମିକ ଏହୁ ପ୍ରସ୍ତରସ୍ଖଳନ;—
ସୂଚକ ତ ନୁହେ ଶୁଭଙ୍କର,
ପଡ଼ିଛି ପଥର ଦିନେ, ପଡ଼ିବ ମନ୍ଦିର
ଭୀମଗ୍ରାସେ ମହାକାଳଙ୍କର ।
ପଡ଼ିଛି ତ କୋଣାର୍କର ସୁବିଶାଳ ମନ୍ଦିର
ସର୍ବଗ୍ରାସୀ ସେ କାଳକବଳେ,
କାରୁକାର୍ଯ୍ୟମୟ ଗୃହ କଳାକଉଶଳେ,
ଥିଲା ଯାହା ଅତୁଳ ଭୂତଳେ ।

କାଳକୂଟ ହଳାହଳେ ଶାଣି ଦନ୍ତଶ୍ରେଣୀ
ଜରାକାଟେ ଏକାନ୍ତ ଅଗ୍ରହେ
ଧାଡ଼ି ଧରି ଉଠିଲେଣି ଏକାମ୍ରକାନନ-
ମନ୍ଦରର ସୁକାନ୍ତ ବଗ୍ରହେ ।
ନାହିଁ ଅଜ ବାରବାଟୀ ନବଢଳ ହର୍ମ୍ୟେ
ହିରଣ୍ମୟ ଗବାକ୍ଷ ମଞ୍ଜରୀ
ସନ୍ଧ୍ୟାଗମେ କଟେ ତାର ଜ୍ୱଳେ ନାହିଁ ଆଜ
ପ୍ରଭାପୁଞ୍ଜ ପ୍ରଦୀପ-ପଞ୍ଜରୀ ।
ପ୍ରାଚୀତଟେ ସଧବାଙ୍କ ଶୁଭେ ନାହିଁ ଆଜ
ହୁଳହୁଳୀ ସିନ୍ଧୁଯାତ୍ରାକାଳେ
ନ ଚାଳନ୍ତି ନବୋଢ଼ାଏ ବ୍ରୀଡ଼ାମୟୀ ଦୃଷ୍ଟି
ଛୁଡ଼ା ହୋଇ ପ୍ରୌଢ଼ା ଅନ୍ତରାଳେ ।
ନାଭିଗୟା ପାଦଦେଶେ ବହି ବୈତରଣୀ
ଆଜି ତ ନ ଶୁଣେ ପୂର୍ବପର
ଅଶ୍ୱମେଧ ଯଜ୍ଞହୋତା ଋତ୍ୱିକମାନଙ୍କ
ବେଦଧ୍ୱନିଝଙ୍କାରଲହରୀ ।
ଆଜ ନ ପଡ଼ଇ କର୍ଣ୍ଣେ ଖାରବଲଙ୍କର
ରଣଢକ୍କା ଭାରତବିଜୟୀ,
ଏ ସକଳ ପୂର୍ବ କୀର୍ତ୍ତିକଳାପ କଳନ୍ତେ
ବ୍ୟାକୁଳେ କଳ୍ପନା ଅଶ୍ରୁମୟୀ ।

---

ସତେ କି ପଡ଼ିବ ଦିନେ ଏ ବଡ଼ ଦେଉଳ
ଧରାତଳେ ହୋଇ ବିଲୁଣ୍ଠିତ
ଅହୋ ! ସେ କରାଳ ଦୃଶ୍ୟ ହୃଦୟବିଦାରକ
ଅଙ୍କିବାକୁ କଳ୍ପନା କୁଣ୍ଠିତ ।
ମାଳତୀପାଟପୁରରୁ ନୀଳଚକ୍ର ଦେଖି
ଯାତ୍ରୀଏ ଆନନ୍ଦକୋଳାହଳେ
ଆଉ କି ନମିବେ ନାହିଁ ଯୋଡ଼ି ବେନିପାଣି
ଜଗନ୍ନାଥ ସ୍ୱାମୀ ପାଦତଳେ ।
ପତିତପାବନ ବାନା ଉଡ଼ାଇ ଜଗତେ
ଶ୍ରୀଗୁଣ୍ଡିଚ୍ଚ ବିଜେ ହେବା କାଳେ
ଟଳି ଟଳି ଚଳିବାର ଛଟା ମନୋହର
ଲୁଟିବ କି କାଳ ଅନ୍ତରାଳେ ।
ସୁଧାପାତ୍ର ଫିଙ୍ଗି ଦୂରେ ଦେବତାଏ ଆସି
କଇବଲ୍ୟ କଣିକାଏ ଲାଗି
କପଟ ଭିଖାରିବେଶେ ଆନନ୍ଦବଜାରେ
ଆଉ କି ବୁଲିବେ ନାହିଁ ମାଗି ?

---

ଏହାପର ଗଲଣି ତ ଏକ ଏକ କରି
ମହାକାଳଂ ପ୍ରବାହରେ ଭାସି
ଉତ୍କୃଷ୍ଟ-କଳାବିଳାସୀ ପୁରୀ ଉତ୍କଳର
କେତେ ସତେ ଗୃହ-କଳା-ରାଶି ।
ମାଟିବଂଶ ଓଝାସଙ୍ଗେ ବୁଲି ଗ୍ରାମେ ଗ୍ରାମେ
ରଙ୍ଗେ ଗୃହାଳୀର ଗୃହମାନେ

ମାଘପଞ୍ଚମୀରେ ଏବେ ଛାନ୍ଦବନ୍ଦୀ ଗୀତ
ନ ଗାବନ୍ତି ସୁମଧୁର ତାନେ ।
"ବଟଗଳକୁ ଅଲିଙ୍ଗନ କରଣ ଜାହ୍ନବୀ"
"ଶିଂଶୁପାବୃକ୍ଷର ଡାଳେ ହନୁ"
"ବାଜ୍ଜ ବାଜବାରୁ ଶ୍ୱାହ୍ଣ ଲକ୍ଷ୍ମଣ ଶବଦ"
ପାସୋର ଗଲଣି ଏବେ ବନ୍ଧୁ ।
ପୁର ପଲ୍ଲୀ ପାବନଶ୍ରୀ ଭାଗବତଟୁଙ୍ଗୀ
ତହିଁ ଚୁଣ୍ଡ ହୋଇ ସନ୍ଧ୍ୟାଗମେ
ଶୁନ୍ତେ ତ ନାହିଁ ପୁରା-କଥା-ରସାୟନ
ଏବେ ପୁରପଲ୍ଲୀବାସିଗଣେ ।
ପଲ୍ଲୀ-ଗାଁ ଅଖଡ଼ାଘରେ ତେଡ଼େ ଅଗ୍ରହରେ
ଆଉ ତ ନ ବାଜଇ ଝଞ୍ଜଣୀ,
ଗୋଟିପ ନାଟୁଆଙ୍କର ନ ଶୁଭେ ତେମନ୍ତ
ସୁଲଳିତ ଆଳାପନଟ୍ଟ୍ୱନି ।
ରସମୟ ଅଙ୍ଗଭଙ୍ଗୀ ହାବ ଭାବ ସଙ୍ଗେ
ତାଳ ଗୁରୁ ବଲେଲ ଗୁହାଣି
ସଙ୍ଗୀତର ଗୂଢ଼ ମର୍ମ୍ମ ସୁରସସମ୍ଭାର
ସେ ମାରବ ପ୍ରକାଶେ ବଖାଣି,
ରସିକ-ଭାବୁକଚିତ୍ତ ମୋହିବା ଗୁହୁରୀ
ଉତ୍କଳର ନାଟ୍ୟକଳା ସାର
ନାଥିଲ ଭାରତେ ମାସ ବ୍ରଜଭୂମି ଛାଡ଼ି
ଅନ୍ୟ କାହିଁ ନାହିଁ ତା ପ୍ରସାର ।
ଅମ୍ଭ ଏ କଳାନିଧିକ କାହୁଁ ଅସି ଏବେ
ଗ୍ରାସିଛୁ ମୋହବକାର-ରାହୁ,

ଉତ୍କଳ କଳାଗୌରବ 'ଛଇନାଚ' ପୁଣି
ରହିଅଛୁ ମାନ ଯାଉ ଯାଉ ।
ନବଦ୍ୱୀପେ ସଂକୀର୍ତ୍ତନ, ଉତ୍କଳେ ଗୋଟିପ,
ବୃନ୍ଦାବନେ ଶ୍ରୀରାସମଣ୍ଡଳୀ
ଢାଳିବାକୁ ସଞ୍ଜୀବନୀ ମୁମୂର୍ଷୁର ପ୍ରାଣେ
ଅଛନ୍ତି ଅମୃତରସାବଳୀ ।
ଗୃମରଗୃଳନପଟୁ ବାଗ୍‌ଯୁଦ୍ଧ ପ୍ରବୀଣ
ଅଶ୍ରୁକବି ପାଲବାଲମାନେ
ବାଗ୍‌ଦେବୀ ପ୍ରସାଦ ଲଭି ସାରଳାଙ୍କ ବରେ
ଗାଇ ଗୀତ ନାନା ଛନ୍ଦ ତାନେ ।
ଶାସ୍ତ୍ର-ପୁରାଣ-ସାହିତ୍ୟ-କାବ୍ୟ-ଅଳଙ୍କାର-
ଉପବନୁଁ ଆହରଣ ମଧୁ
ସିଞ୍ଚାଇ ନିଖିଳପ୍ରାଣେ ଅମୃତର ଧାରି
ଥିଲେ ପୌର ଜାନପଦବନ୍ଧୁ ।
ଲାଗିଛି ପଲ୍ଲୀମଙ୍ଗଳ ଗ୍ରାମସଂଗଠନ
ପଡ଼ିଅଛି 'ନିରକ୍ଷର' ହୁରି
ଅପାଠ୍ୟବଂଶଧ୍ୱଂସେ କଂସରୂପୀ ତାଙ୍କ
ଶିରି କମ୍ପା ପଡ଼ୁଛି ମଜଲି ?
ଏ ବଡ଼ ଦୁଃଖର କଥା କି ପ୍ରଗତିପଥେ
ପଥିକ ହେଲୁଁଟି ଅମ୍ଭେ ଅଜି,
ଉଭେଇ ଯାଉଛି କମେ ଯା କିଛି ଅମ୍ଭର
ପୂର୍ବାର୍ଜିତ ବିଭବରାଜି ।
ଧର୍ମ କର୍ମ ଜାତି କୁଳ ସକଳ ବରଜି
ଏ କେବଣ ପ୍ରଗତିର ପନ୍ଥା,

ମୁଣ୍ଡହାଳ ଗୋଡ଼େ ମାରି ମିଳୁ ନାହିଁ ଅନ୍ତ
ମୁଠେ ଅନ୍ନ ଖଣ୍ଡେ ଶିରୀ କନ୍ଥା ।
ଏ ବିଷମ ସମସ୍ୟାର ସମାଧାନ କଲେ
ଆଜ କିବା ଅଛି ପରିପନ୍ଥୀ,
"ସର୍ବ ଧର୍ମାନ୍ ପରିତ୍ୟଜ୍ୟ" ହେଲୁଣି ତ ଆମ୍ଭେ
ନାରକୀଣ ପରଗତାଗନ୍ଥୀ ।
ଶୌଚାଶୌଚବିବର୍ଜିତ ଅଘୋର ଦୀକ୍ଷାକୁ
ମହା ବୈଦାନ୍ତିକ ତଥ ମଣି,
ଭାବିଲୁଣି ଜୀବନର ତ୍ରିତାପ ଜ୍ୱାଳାକୁ
ଅମୋଘ ଏ ବିଶଲ୍ୟକରଣୀ ।
ଧର୍ମ କର୍ମ କୁଳ ଶୀଳ ସମ୍ପର୍କର ଏମନ୍ତେ
ଏକେ ଏକେ ସକଳ ଖୁଆଇ
ମହାମାନବ ସଭାରେ ଉତ୍କଳୀୟ ବୋଲି
କିବା ପରିଚୟ ଦେବା ଭାଇ !

---

# ଧାରା-ଶ୍ରାବଣ

ଅଇଲା ଧାରା-ଶ୍ରାବଣ
ଝରେ ମଧୁ ଆସାର,
କୁମୁଦ କହ୍ଲାର ଫୁଟି
ଶ୍ୱେତ ଦଶେ କାସାର ।
ବିଲ ଖାଲ ନଦୀ ନାଳ
ପଡ଼ୁଅଛୁ ଉଚ୍ଛୁଳି,
ଠାଙ୍ଗରେ ଗିରିଝରଣା
ଯାଇଅଛୁ ମୁକୁଳି ।
ନବଜଳେ ଖେଳି ବୁଲ୍ନ—
ଛନ୍ତି ହଂସ କାଦମ୍ବ,
ମହାକାନ୍ତାରରେ ବନ
ଫୁଟି କେଳିକଦମ୍ବ ।
କାମିନୀ ମାଳତୀ ମଲ୍ଲୀ
ଫୁଟିଅଛୁ ଝଗର,
ବହଇ ଉତ୍ତର ବାଅ
ଜଳ ଜଳ ଡଗର ।
ଖୋଲିଦେଇଛୁ କି ଉପ—
ବନ ବାସ ପସରା,
ସାନ୍ଧ୍ୟ ବାୟୁ ଦେଇଯାଏ
ସଉରଭ ହକରା ।

ଶିର ଟେକ ବ୍ରତତୀଏ
ପିଉଛନ୍ତି ପୀୟୂଷ
ମେଘପାଳେ ମେଦୁରିତ
ଦଶେ ନଭଃ କାଦୃଶ ।
କ୍ଷଣେ ଝିପି ଝିପି ପୁଣି
କ୍ଷଣେ ଘୋର ଅଜାଡ଼ା
ପୂରିଛି ବିଲ ପୋଖରୀ
ଭାଙ୍ଗି ପଡ଼େ ଅତଡ଼ା ।
ଦୁଇକୂଳ ଖାଇ ନଈ
ବହେ ଭୀମ ପ୍ରବାହେ
ମାଛ-ଲଙ୍କାବନ୍ଧ ଭାଙ୍ଗି
ଭଙ୍ଗା ନାଆ ପରାୟେ ।
ଗୃହୁଁ ଗୃହୁଁ ବେଳଟିକ
ବୁଡ଼ିଗଲା ଅଧୀରେ
ସେ-ପାରର ଦୂରପଲ୍ଲୀ
ମିଶିଗଲା ତମିରେ ।
ତମିସ୍ର-ବହଳ
ନଦୀକୂଳ-ବଟ-ଓହଳ –
ସନ୍ଧରୁ ଅନ୍ଧାର-ଦୁଅ
ମାଡ଼ି ଆସି ଚଞ୍ଚଳ
ଘୋଟିଗଲା ଜଳ ସ୍ଥଳ
ନଭ ନେତ୍ରପଲକେ;
ଅନ୍ଧାରିଆ ଅମ୍ବବନେ
ଖଦ୍ୟୋତର ଝଲକେ ।

ଲହରୀମୁଖରା ନଦୀ
ପଡ଼ୁଅଛୁ ଉଚ୍ଛୁଳ
ମର୍ମର ସଙ୍ଗୀତୋଚ୍ଛ୍ୱାସେ;
ସେ ଶବଦ ପୃଥୁଳ
ପଲ୍ଲୀଗାଁ ଅଖଡ଼ା ଘରେ
ବାଜୁଅଛୁ ଖଞ୍ଜଣୀ
ଶୁଭୁଅଛୁ "ଆଜ କ ରେ
ଗଜରାଜଗମନା।
ଶୈଶବ ମଧୁର ସ୍ମୃତ
ସେ ସଙ୍ଗୀତ ସୋରତେ
ଭାସି ଆସି ସଂଗୋପନେ
ଧୃତ-ଲତା କରନ୍ତେ।
ଭାସର ପ୍ରାବୃଟରାଣୀ
ଧାରା-ଭରା ଶ୍ରାବଣେ
ବରଷେ ଶ୍ରାବଣ ଘନ
ଝରଝର ଝୁଲଣେ।
ଢାଙ୍କିଛୁ ପୃନ ଅଗୃନ
ମେଘପୁରୀ-ପରଦା
ଭବନେ ଭବନେ ବହେ
ରାସଲୀଳା-ନର୍ମଦା।
ହୃନ୍ଦୋଳା ବରଚ ମଧୁ
ମାଳତୀର ଓହଲେ
ଝୁଲନ୍ତ ଶ୍ରାବଣେ ରାଧା
କୁଞ୍ଜ ଲତା ଗହଳେ

ସରଳା ସଙ୍ଗିମାଙ୍କର
ଅଭିସାର ସଙ୍ଗୀତ,
ବିରହବିଧୁର କୁଞ୍ଜ
କରେ ପ୍ରତିଧ୍ୱନିତ ।
ବାଜଇ ମୁରଲୀ ଦୂରେ
ମନ୍ଦ୍ର ମେଘମଲ୍ଲାରେ,
ଗରଜେ ଗଗନେ ଘନ
ବାରିଧାର-ସମ୍ଭାରେ ।
ମୁହୁର୍ମୁହୁଃ ସ୍ଫୁରେ ନଭେ
ବିଦ୍ୟୁଲ୍ଲତା ଚଞ୍ଚଳ,
ଦୀପିତ ଦାମିନୀମାଳେ
ବନଲକ୍ଷ୍ମୀ ଅଞ୍ଚଳ ।

---

# ଆଗମନୀ

ଚଟୁଳ ମଳୟାନିଳ ମାଳତୀର କାନେ କାନେ
ଦେଉଛନ୍ତି ସନ୍ଦେଶ ନଦୀ-ଲହରୀର ତାନେ ତାନେ ।
ଚଞ୍ଚଳ ତରଙ୍ଗାୟିତ ଶ୍ୟାମଳ ଶସ୍ୟକେଦାରେ,
ପୁଣି ଅଳିସମାକୁଳ କୁମୁଦ-ଦହ୍ଲ-କାସାରେ ।
ଅବତର ଧରାଧାମେ ଶିଶିରସିକ୍ତ ସୋପାନେ,
ଅସନ୍ତ ଶରତଲକ୍ଷ୍ମୀ ଶ୍ୟାମଳ ସୁଷମା-ଯାନେ ।
ମନ୍ଦ ସମୀରେ ମୃଦୁଳେ ଦୋଳଇ ଶ୍ୟାମ ଦୁକୂଳ,
ଗାଉଛନ୍ତି ଅଗମନୀ ପ୍ରଭାତେ ପତତ୍ରିକୁଳ ।
ଅସିଲେ ଗିରିକୁମାରୀ ସରବ-ଶୋଭା-ସଦନା,
ଉଜ୍ଜ୍ୱଳା ମେନକାପୁତ୍ରୀ ଶରତଶଶିବଦନା ।
ବାଲ୍ୟର ସଙ୍ଗିନୀମାନେ ଆଦରେ ନେଲେ ପାଛୋଟି,
ଚେତା ଲଭିଲେ ମେନକା ଶୁଣନ୍ତେ ଉମା ଦ୍ୱାରେଠି ।
ଶୁଭିଲା ଗିରୀନ୍ଦ୍ରପୁରେ ମଙ୍ଗଳ ବୋଧନ ଶଙ୍ଖ,
ପଶିଲେ ହରସୁନ୍ଦରୀ ସାଦରେ ଜନନୀ ଅଙ୍କ ।
ନଗେନ୍ଦ୍ରନନ୍ଦିନୀ ମୁଦେ ଗିରି-ପୁରାଙ୍ଗନା ଦଳେ,
ମଧୁର ବଚନ କେତେ ପୁଛିଲେ ଗଳପଛୁଟଳ ।
ଶଙ୍କରପୁରବାରତା କୌତୁକେ ସଙ୍ଗିନୀଗଣ,
ପୁଛନ୍ତେ ଲାଜେ ପାଟଳ ଦଶିଲା ବଧୂବଦନ ।
ପରମଜଡ଼ିତ ତୁଣ୍ଡେ ପଡ଼ିଲା ଲାଜଶିକୁଳି,
ଖରପରଶେ ଝାଉଁଳି ପଡ଼େ ଯଥା ଲାଜକୁଳି ।

ଆନନ୍ଦ ମଦିରାପାନେ ଉନ୍ମତ୍ତ ମେନକାରାଣୀ
ଆଜି ଏ ଉତ୍ସବସୁଖ ବଚନେ ନୁହେ ବଖାଣି
ଗିରିରାଜପୁରୁଁ ଆଜି ବହେ କିବା ସୁଧାଧାର
ଉଦ୍ବେଳ ପ୍ଲାବନେ ଯାର ପ୍ଲାବିତ ଭାରତ ସାରା ।

---

# ପ୍ରୋଷିତଭର୍ତ୍ତୃକା ଅଭାଗିନୀର ଅନ୍ତିମ କଥା

ଆଜ ମୋର ହୃଦୟନିକୁଞ୍ଜେ
ସ୍ତବକେ ସ୍ତବକେ ନାନାଫଳ,
ପରିପକ୍ୱରସେ ପୁଞ୍ଜେ ପୁଞ୍ଜେ
ପତନ-ଉନ୍ମୁଖ ଟଳମଳ ।
ଦୀରଘ-ବିରହ-ଦାବାନଳେ
ଲଭି ଅଶ୍ରୁକୃତ୍ରିମ ପକ୍ୱତା,
ଠହ ଠହ ଦଶୁଛନ୍ତି ରସେ
ନଇଁ ପଡ଼େ ଫଳବତୀ ଲତା ।
ଗୋଟି ଗୋଟି ବାଛୁ ନିଅ ତୋଳି
ଆସ ହେ ସୁରସିକ ନାଗର !
ଭରିନିଅ ପ୍ରଣୟପସରା
ଆସ ମୋର ଜୀବନ ଦୋସର !
ମୃଦୁ ମନ୍ଦ ମଳୟ ହିନ୍ଦୋଳା
ଦୋଳନେ ଦୋଳଇ ଘନ-ଘନ,
କାଲି ଯେବେ ବହିବ ଧୂନ୍ଧୁଳ
ଲଭିବେ ତ ନିଷ୍ଠୁର ପତନ ।
କତୀସହ ପଡ଼ିବଟି ଝଡ଼
ଭରି କୁଞ୍ଜ ହେବ ଶୁଷ୍କ-ମରୁ,
ମଉଳିବ ମାଧବୀ ଲତିକା
ବେଗେ ଆସ ଦୂର ପ୍ରବାସରୁ ।
ଛେଦ ଲଜ୍ଜା ଶିଆଳୀର ବେଢ଼ା
ତୁମ୍ଭ ବିନା ଚହ୍ଲି ବନପଥ,

ଶତଗୁମ୍ଫା-ପ୍ରଣୟ-ରସାଳ
ଭୁଞ୍ଜିବାକୁ କିଏ ସମରଥ ।
ତୋଳିଥିଲି ଯତନେ ଯେ ଫଳ
ଧୋଇ ତପ୍ତ ନୟନର ନୀରେ,
ଧାଡ଼ି ଧାଡ଼ି ରଖିଛୁ ସଜାଡ଼ି
ପ୍ରଣୟର ରାଜବିପଣୀରେ ।
ଅଜ୍ଞାନର ଘଣକୁହେଳିକା
ଢାଙ୍କିଥିଲା ବରଣ-ପାହାନ୍ତ୍ରୀ,
ଦୂରେ, ବହୁଦୂରେ ମିଞ୍ଜି ମିଞ୍ଜି
ଜଳୁଥିଲା ପ୍ରଣୟର ବତି ।
ଇନ୍ଦ୍ରଜାଲେ ଘେରି କିଏ ମୋତେ
ଘେନି ଗଲା କୁହକ ଆବେଶେ,
ସତେ ଯେହ୍ନେ ମନ୍ଥି ଦରିଆକୁ
ଠେଲି ଦେଲା ନୟନ ନିମେଷେ ।
ତବ ଭୁଜ-ଅଚହ୍ନା ପରଶ
ସଞ୍ଚାରିଲା ସର୍ବାଙ୍ଗେ ପୁଲକ,
ଭାଙ୍ଗିଗଲା ମୟ-ମାୟାପୁରୀ
କାଉଁରି ପରଶେ ବା କୁହକ,
ଅନୁଭବ ନ ଥିଲି ପରାଣେ
ପ୍ରଣୟର ମଦିର ଚୁମ୍ବନ
ଅନୁଭବ ନ ଥିଲି ଅନ୍ତରେ
ତୁମ୍ଭେ ଯେ ମୋ ସାଧନାର ଧନ ।
କେହି କହେ ନାହିଁ ତୁମ୍ଭେ ମୋର
ଜୀବନର ଚରମ ଅକାଂକ୍ଷା

ତୁମ୍ଭେ ମୋର ଭୂତଳେ ସ୍ୱରଗ
ମୋ ପରାଣ-ପ୍ରହେଳିକାର ବ୍ୟାଖ୍ୟା ।
ଜାଣିଥିଲେ ବସିଥାନ୍ତି ନାଥ
ହୃଦୟର ଅନ୍ଦରମହଲେ
ତୁମ୍ଭ ପାଇଁ ସୁମ୍ପାତି ଶୟନ
ରଚିଥାନ୍ତି ମଞ୍ଜୁ ମଖମଲେ ।
ଭିଞ୍ଜଥାନ୍ତି ମଧୁଶଯ୍ୟା ଘଟରେ
ବାଲୋଚିତ ଗୁମାନବଇଦ,
ଅଜ ମୁଁ ତ ନୁହେଁ ଅଜ ବାଳା :—
ଯୌବନର ଚୁମ୍ବନ ଚଇଦ୍
ଅକର୍ଷିଣ ଚିତ୍ତଚକ୍ରୀ ମୋର
ଉଡ଼ିନାଏ ବିଦେହନଗରେ,
କେମନ୍ତେ ହେ ଧୈର୍ଯ୍ୟ ଧରି ତୁମ୍ଭେ
ରହିଛ ମୋ ନେତ୍ର ଅଗୋଚରେ !
ମୁଛିଛ କି ପକାଇଛ ନାଥ
ମୋର ସ୍ବଚ୍ଛ ମାନସପଟରୁ,
କଳ୍ପତରୁ ଗହଳ-କାନନ
ମୋ ଭାଗ୍ୟେ କି ହେଲା ଶୁଷ୍କ ମରୁ ?
ଜାଣିଛ କି ସୂକ୍ଷ୍ମ ଥିଲା ଯାହା
ଊର୍ଣ୍ଣନାଭ କ୍ଷୀଣ ତନ୍ତୁ ସମ,
ତୁମ୍ଭ ମୋହ ସଂବନ୍ଧନ-ରଜ୍ଜୁ
ହୋଇଛୁ ହେ ଯୌବନେ ବିଷମ ।
ନିରଙ୍କୁଶ ଚିତ୍ତ ମୋର ଟାଣି
ଘେନିଯାଏ କଳ୍ପନାର ରଥେ,

ସ୍ୱପ୍ନମୋହେ ସେ ମୁଖମଣ୍ଡଳ
ଦେଖୁଛୁ ମୁଁ ସ୍ମିତମଞ୍ଜୁ ସତେ ?
ସ୍ୱପନରେ ହେଲେ ଭାବିଛ କି
ମୁହିଁ ତବ ଜୀବନସଙ୍ଗିନୀ ।
କଳ୍ପନାରେ କେବେ କି ଶୁଣିଛ
ମୋ ବଧିର ହୃଦୟ ଦହନା ।
ଜାଣିଛ କି ଆଜ କେତେ କାଳ
ଆସିଲଣି ଅନ୍ତକ-ହକର
କାହା ଅଙ୍କେ ଢାଳିଦେବ ନାଥ
ହୃଦୟର ଗୋପନ ପସର ।
କାହା ହାତେ ଅରପିବ ଦେବ
ଅନ୍ତରର ଗନ୍ଧାଧର ଗୁବ,
କିଏ ତଥା ପ୍ରତ୍ୟୟଭାଜନ,
ତୁମ୍ଭ ବିନା ତହିଁ କାହା ଦାବ ?
ଚିରରୁଦ୍ଧ ରହିଲା ତ ନାଥ,
ଉଚ୍ଛ୍ୱସିତ ହୃଦୟଟି ମୋର,
ଅଚ୍ଛେଦ୍ୟ ତ, ହେ ସର୍ବ ଶର୍ମ୍ମଦ,
ତୁମ୍ଭ ମୋହ ପ୍ରଣୟର ଡୋର ।
ସତେ ନାଥ ଭୁଲିବ ଦାସୀକି
ପୋଛୁ ମୋର କ୍ଷୀଣ ସ୍ମୃତିଚିହ୍ନ ।
ତୁମ୍ଭ ମୋହ ଅଚ୍ଛେଦ୍ୟ ବନ୍ଧନ
ସତେ କି ହେ ହୋଇଯିବ ଛିନ୍ନ ?
ରଖି ମୁଁ ତ ଯାଉ ନାହିଁ କିଛୁ
ସୁଖା ସୁଖ ସ୍ମାରକ ସମ୍ପଦ

ଅନ୍ଧକାର ଅନ୍ଧୁଅଛୁ ମାଡ଼ି
ଜଳେ ବକ୍ଷ ନୈରାଶ୍ୟଦଗଧ ।
ହେ ନାଥ ! ମୋ ଅତୃପ୍ତ ବାସନା
ମୂର୍ତ୍ତିମନ୍ତ ଭ୍ରମିବ ଉଦ୍‌ବାହୁ ?
ସହ୍ୟ ନୁହେ ଅନ୍ତିମ ଯନ୍ତ୍ରଣା
ପିଣ୍ଡ ପ୍ରାଣ ଛାଡ଼ିଯାଏ—ଯାଉ ।

---

# ଅଭିସାରିକା

( ରାମକେଳି )

ବାଜଇ ମୁରଲୀ ମଧୁରେ
ମଧୁ ମାଳତୀକୁଞ୍ଜେ-
ଗଭୀର ଶ୍ରାବଣ-ଶର୍ବରୀ
ଘନ-ତିମିର-ପୁଞ୍ଜେ
ବରଜବଧୂର ବଧୂର
ହୃଦେ ଢାଳି ସାନ୍ତ୍ୱନା;
ଉଠେ ଘନ ଘନ ବିନୋଦ-
ବେଣୁ-ଗୀତ-ମୂର୍ଚ୍ଛନା ।
ସେ ମନୋମୋହନ ସଙ୍କେତ
ବଂଶୀ ଉଲ୍ଲାସେ ଶୁଣି
ଶ୍ୟାମ ଅଭିସାରେ ସାଜିଲେ
ଯେତେ ବ୍ରଜତରୁଣୀ ।
ସର୍ବେ ନବ ଅନୁରାଗିଣୀ
ଶ୍ୟାମ-ସଙ୍ଗିନୀଗଣ
ଅନୁସରି ସ୍ୱର ସଙ୍କେତ
ତ୍ୟଜିଲେକ ଭବନ ।
ନ ଯାଅ ନ ଯାଅ ଗହନ
ବନେ ଏ ନିଶାକାଳେ,
ପୁଣି ତହୁଁ ମେଘ ବାଦରେ
ଦେଖ ଅଜସ୍ର ଢାଳେ ।

ସମୀର ଭୃଷିଲା ଏସନ
ମୃଦୁ ନିଷେଧ-ବାଣୀ
ଶୀକର ପରଶେ ବଦନୁଁ
ଅବଗୁଣ୍ଠନ ଟାଣି ।
ହସିଲା ଦାମିନୀ ସରଗେ
ଚମ୍ପି ଲୋଲଲୋଚନେ
ବୋଇଲା ଜାଣିଥିକାଲେ ଗୋ
ନ ଯା' ଗହନ ବନେ ।
ଶ୍ରବଣେ କୁଣ୍ଡଳ ମୃଦୁଲେ
ଦୋଳି ଭୃଷିଲା ପରି,
ନ ଯା ହୋଇ ଏତେ ମିଳନ—
ମଧୁପାନେ ଉତ୍ପୃରି ।
ଦ୍ୱିବାହୁ ପ୍ରସାରି ଅନ୍ଧାର
ଆସି ଓଗାଳେ ବାଟ,
ରହ ରହ ମେଘ ମଣ୍ଡଳ
ମୃଦୁ ସଜଳ ଛାଟ ।
ନାହିଁ ନାହିଁ ନିଶା କହିଲା
ସାଇଁ ସାଇଁ ଗରଜି
କେଉଁଣେ ଚଳ କୁଳଲଳନା
କୁଳ ଶୀଳ ବରଜି ।
ବିବେକ ଭୃଷିଲା ଏମନ୍ତ
ମୂକ ମଉନ-ବାଣୀ,
( ପ୍ରାବୃଟେ ଉଛୁଳ-କାଳିନ୍ଦୀ
ବହେ ଟିକି ଉଜାଣି )

ପ୍ରେମବନ୍ୟା ଯାକୁ ଅନନ୍ତ—
ପଥେ ନାଏ ଭସାଇ,
ବିବେକ ସଙ୍ଗତେ ସଂଗ୍ରାମେ
ଅବସର ତା କାହିଁ ?
ଶୁଣି ନ ଶୁଣିଲ ପରିଏ
ବାଣୀ କଣୋରିଗଣ,
ଉଦ୍ବେଗେ ଧାଇଁଲେ କାନ୍ତାର—
ପଥେ ହୋଇ ଉଚ୍ଛନ୍ନ ।
( ସେ ଉଚାଟ ବେଣୁ ଅହ୍ୱାନ
ସେହି ଗୂଢ଼ ବନ୍ଧନ
ଅଲକ୍ଷିତେ ଯେବେ ଓଟାରେ
ନାଏ ପରାଣ ମନ,
ତାକୁ ଏଡ଼ିବାର ବ୍ରହ୍ମାଣ୍ଡେ
କାହିଁ କେ ଅଛୁ ଶୁଣି ?
ଏକେ ନବ ଅନୁରାଗିଣୀ
ଏ ଯେ ଅବଳା ପୁଣି ।)
ଭାବିଲେ ନ ଗଲେ ବନ୍ଧୁ ତ
ଅଶାପଥକୁ ଗ୍ରହିଁ
ନାରିଣ ହୋଇବେ ରଜନୀ –
ଯାକ ବରଷା ଖାଇ ।
ସାରି ନଣାଯାକ ବନ୍ଧୁ ତ
ଏକା କଦମ୍ବତଳେ
ସାଧୁଥିବେ 'ସୁଧାମଧୁର
,ବଂଶୀ ବସି ବିରଲେ ।

ପର୍ଣ୍ଣମରମରେ ଚମ୍ପକ
ପଡ଼ୁଥିବେ ସତତ
ବାନ୍ଧବୀ ଅସିବା ପଥକୁ
ଗୃହେଁ ହୋଇ ଜୟତ ।
ନବ ଅନୁରାଗେ ଏମନ୍ତେ
ମାତ ନବୀନାଗଣ
ଉଦ୍ବେଗେ ଧାବନ୍ତ କାନ୍ତାର-
ପଥେ ହୋଇ ଉଚ୍ଛନ୍ନ ।

---

## ବ୍ରାହ୍ମ ମୁହୂର୍ତ୍ତ

ବହୁ ଅଳସେ ବାୟୁ ପାର୍ଶ୍ୱ ଦେବାଳୟୁ
ଉଷା-ଉପାସନା-ସୁବାସ ବହି;
କାନ୍ତାରପ ବାଡ଼ି ଯେନ ଅରୁଣିମା
ଗଲା ସରୋଜନୀ ଶ୍ରବଣେ କହି ।
ନୟନ ମୁଦିଲ କୁମୁଦନୀ ଦେଖି
ବିବରଣ କାନ୍ତ-ବଦନ-ପ୍ରଭା;
ନିଶାନ୍ତ ସମୀରେ ଝରେ ଶେଫାଳିର
ଶିଥିଳିତ ଶ୍ୱେତ କୁସୁମ ଗଭା ।
ଉଇଁଲେଣି କଞ୍ଜ— ନୟନ-ରଞ୍ଜନ
ବଉଦ ଗୁମାନ ଗଞ୍ଜନ କରି;
ନଳିନୀ-ହୃଦୟେ ପ୍ରଣୟ-ଉତ୍ସବ
ଝରଇ କାମିନୀ ମରମେ ମରି ।
ପ୍ରାନ୍ତୁଁ ଉଠ ଧେନୁ ବତ୍ସା ଯେନ ଗୋପେ
ଗୋଠେ ଯାନ୍ତି ଶିଙ୍ଗା ମୁରଲୀ ବାଇ
କାହିଁ ଗୃହାଳିକୁ ଗମନ୍ତି ବାଳକେ
କୁଣ୍ଠିତ ଚରଣ ମଠେ ପକାଇ ।
ସର ଉପବନୁଁ ସୁରଭି ସୁମନ
ଡାଲା ଭରି ମାଳୀ ନିଅଇ ତୋଳି
ଶୀକର-ସରସ ଉଷାନ୍ତ ସମୀର
ଶ୍ରୀଅଙ୍ଗେ ସୌରଭ ରଭସେ ବୋଳି ।
ସେ ସୁଗନ୍ଧ ଲୋଭେ ଗନ୍ଧବହ ତହୁଁ
ସୁରଭି କୁସୁମ ବନେ ସଞ୍ଚରି,
ବସି **ବୈଜୟନ୍ତୀ** ଗୁନ୍ଥୁଥିଲା ମାଳୀ
ପ୍ରମୋଦରେ ଗଲା ପରଶ କରି ।

---

Printed by P. Kar, U.S. Press, Cuttack—27-11-40—1000